# ଜାତୀୟ କବି

# ବୀରକିଶୋର



## ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର

ଓଡ଼ିଶା, ଭୁବନେଶ୍ୱର

ଜାତୀୟକବି ବୀରକିଶୋର

| | |
|---|---|
| ଲେଖକ | ଶ୍ରୀ ବସନ୍ତ ଦାସ |
| ପ୍ରଥମ ପ୍ରକାଶ | ୧୯୯୭ |
| ନୂତନ ମୁଦ୍ରଣ | ୨୦୦୧ |
| ପ୍ରକାଶକ | ନିର୍ଦ୍ଦେଶକ<br>ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା<br>ଜନଶିକ୍ଷା ଭବନ, ୟୁନିଟ-୫,<br>ଭୁବନେଶ୍ୱର - ୭୫୧୦୦୧ |
| ପ୍ରକାଶନ ସଂଖ୍ୟା | ଏସ୍. ଆର୍. ସି - ୨୧୧-୧୨/୯୭ |
| ମୁଦ୍ରଣ ସଂଖ୍ୟା | ୨,୦୦୦ |
| ମୁଦ୍ରଣ | ବିଶ୍ୱମୁକ୍ତି ପବ୍ଲିକେଶନ, ଏ/୨, ସହିଦ ନଗର<br>ଭୁବନେଶ୍ୱର - ୭୫୧୦୦୭ |
| ମୂଲ୍ୟ | ଛଅ ଟଙ୍କା ମାତ୍ର |

JATIYAKABI BIRAKISHORE

| | |
|---|---|
| Written by | Sri Basanta Das |
| 1st Edition | 1997 |
| New Edition | 2001 |
| Published by | Director,<br>State Resource Centre for Adult Education,<br>Orissa, Janasikshya Bhavan, Unit-V,<br>Bhubaneswar - 751001 |
| Publication No. : | S.R.C.-211-12/97 |
| No. of copies Printed | 2,000 |
| Printed at | Vishwamukti Publication, A/2, Saheed Nagar,<br>Bhubaneswar - 751007 |
| Price | Rupees SIX ONLY |

ଅନେକ ଦିନ ତଳର କଥା । ସେତେବେଳେ ଗୋରା ସାହେବମାନେ ଆମ ଦେଶକୁ ଶାସନ କରୁଥାନ୍ତି । ସାହେବମାନେ ପ୍ରଥମେ ଆମ ଦେଶକୁ ବେପାର କରିବା ପାଇଁ ଆସିଥିଲେ । ବେପାର କରୁ କରୁ ଆମ ଦେଶକୁ ଶାସନ କଲେ । ଏହି ଶାସନକୁ ଇଂରେଜ ଶାସନ ବୋଲି କୁହାଯାଉଥିଲା । ଇଂରେଜମାନେ ନିଜ ସୁବିଧା ପାଇଁ ଆମ ଲୋକଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର କରୁଥିଲେ । ଲୋକଙ୍କୁ ହଇରାଣ ହରକତ କରୁଥିଲେ ।

ଇଂରେଜମାନଙ୍କ କବଳରୁ ଆମଦେଶକୁ ମୁକୁଳେଇବା ପାଇଁ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଆନ୍ଦୋଳନ ଆରମ୍ଭ ହୋଇଥାଏ । ମହାତ୍ମାଗାନ୍ଧି ଦେଶର ଚାରିଆଡ଼େ ବୁଲି ଲୋକଙ୍କୁ ଏକଜୁଟ ହେବା ପାଇଁ ଡ଼ାକରା ଦେଉଥାନ୍ତି । ତାଙ୍କ ଡାକରାର ଜବାବରେ ଲୋକେ ସରକାରୀ ଚାକିରି ଛାଡ଼ି ଆନ୍ଦୋଳନରେ ମାତୁ ଥାଆନ୍ତି । ଅଳ୍ପ ବୟସର ପିଲାମାନେ ମଧ୍ୟ ସ୍କୁଲ କଲେଜରୁ ପଢ଼ା ଛାଡ଼ି ଏଥିରେ ଯୋଗ ଦେଉଥାନ୍ତି ।

୧୯୩୦ ମସିହା ଅପ୍ରେଲ ମାସ ପ୍ରଥମ ସପ୍ତାହର ଘଟଣା । ସେତେବେଳେ ଗୋରା ସାହେବମାନେ ସମୁଦ୍ରରୁ ଲୁଣମାରିବା ପାଇଁ ଆମ ଲୋକଙ୍କ ଉପରେ କଟକଣା ଜାରି କରିଥାନ୍ତି । ଆମ ସମୁଦ୍ରରୁ ଲୁଣ ମାରି ଅଧିକ ଦାମ୍‌ରେ ପୁଣି ଆମକୁ ବିକିବାକୁ ସେମାନେ ଏକ ଫିକର ଫାନ୍ଦିଥାନ୍ତି । ଏପରି ଅନ୍ୟାୟ କାର୍ଯ୍ୟର ବିରୋଧ କରିବାକୁ ଓ ଲୁଣ ମାରିବା ପାଇଁ ଏକଜୁଟ ହୋଇ ବାହାରିବା ନିମନ୍ତେ ଗାନ୍ଧିଜୀଙ୍କ ଡାକରାରେ ଲୋକେ ଚାରିଆଡ଼େ ସଭାସମିତିମାନ କରୁଥାନ୍ତି ।

କଟକ କାଠଯୋଡ଼ି ନଈ ବାଲିରେ ଗୋଟିଏ ବଡ଼ ଧରଣର ସଭା ହେଉଥାଏ । ବହୁତ ଲୋକ ରୁଣ୍ଡ ହୋଇଥାଆନ୍ତି । ଇଂରେଜ ସରକାରଙ୍କ ଆଇନ ନ ମାନି ସମୁଦ୍ରରୁ ଲୁଣ ମାରିବା ପାଇଁ ଆଗେଇ ଆସିବାକୁ ସଭାରେ ଲୋକଙ୍କୁ ଅନୁରୋଧ କରାଯାଉଥାଏ । ସେଥିସହିତ ବିଦେଶୀ ଲୁଗାକୁ ନିଆଁରେ ପକାଇ ଦେବା ପାଇଁ ମଧ୍ୟ ଘୋଷଣା କରାଯାଉଥାଏ । ଲୋକେ ନିଜ ନିଜ ଦେହରୁ କୁର୍ତ୍ତା, ଚାଦର ସବୁ କାଢ଼ି ଏକାଠି କରି ସେଥିରେ ନିଆଁ ଲଗାଉଥାନ୍ତି । ଚାରିଆଡ଼େ ଆନନ୍ଦ । ଖୁସିରେ ସାନପିଲା ସବୁ ତାଳି ମାରି ନିଆଁ ଚାରିପାଖେ ନାଚି ନାଚି ମହାତ୍ମାଗାନ୍ଧି କି ଜୟ ଧ୍ୱନି ଦେଉ ଥାଆନ୍ତି ।

ସଭା ଚାଲୁଥିଲା ବେଳେ ଜଣେ କଲେଜ ଛାତ୍ର ଗୀତ ବୋଲିଲେ –

"ଫିଙ୍ଗରେ ଆଜି ପୁଲକ ପରାଣେ
ବିଦେଶୀ ବସନ ଭାଇ,

ଅଙ୍ଗକୁ କର ପବିତ୍ର ତୁମର
ଜାତୀୟ ସଙ୍ଗୀତ ଗାଇ ।
ଏ ଦେଶବାସୀଙ୍କ ତଣ୍ଟିଚିପା କୁଗା,
ଏ ପାପରାଶିରେ ଆଜି ନିଆଁ ଲଗା
ଏ ପାପରାଶିରେ ଆଜି ନିଆଁ ଲଗା,
ଦେବତା ଉଠନ୍ତୁ ଚେଇଁ ।''

ଆଉ କେଇଦିନ ପରେ କାଠଯୋଡ଼ି ବାଲିରେ ପୁଣି ଏକ ସଭା ହେଲା । ସେତେବେଳକୁ ଦରିଆ ଦଖଲ କରିବାକୁ ଯିବା ବାଟରେ ଗୋପବନ୍ଧୁ ଚୌଧୁରୀ ଓ ଅନ୍ୟମାନେ ଗିରଫ ହୋଇଥାଆନ୍ତି । ସଭାରେ ବହୁ ଛାତ୍ର ଓ ଯୁବକ ଯୋଗ ଦେଇଥିଲେ । ଗୋପବନ୍ଧୁ ଚୌଧୁରୀଙ୍କ ଗିରଫରେ ଲୋକେ ତାତି ଯାଇଥାନ୍ତି । ବିଶେଷ କରି ସ୍କୁଲ କଲେଜ ଛାତ୍ରମାନଙ୍କ ମଧ୍ୟରେ ଉତ୍ତେଜନା ପ୍ରକାଶ ପାଉଥାଏ । ସେଦିନ ପୁଣି ସଭାରେ ଜଣେ ଛାତ୍ର ଗୀତ ଗାଇଲେ —

''ରଣ ସମୟରେ ବହ୍ନି ଘୋଷିବାକୁ
ଆଉ ମୋତେ ଛମା ବଜାନା
ଛାତିର ରକତ ତାତିଯାଏ ମୋର
ବାଜିବାରୁ ଯୁଦ୍ଧ ବାଜଣା'' !

ଏ ଯେଉଁ ଦୁଇଟି ଗୀତ ଦୁଇଟି ସଭାରେ ବୋଲା ଯାଇଥିଲା, ତା'ର ଲେଖକ ଥିଲେ ଜାତୀୟକବି ବୀରକିଶୋର ଦାସ । ଗୀତ ଦୁଇଟି ବୋଲିଥିଲେ ନିରଞ୍ଜନ ଘୋଷ । ସେ ଗୀତ ଶୁଣି ଶହ ଶହ ପଢ଼ା ପିଲା

ସ୍କୁଲ କଲେଜ ଯିବା ବନ୍ଦ କରିଦେଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ବୀରକିଶୋର ଯୁବା ବୟସରୁ ଗୀତ ଲେଖି ଇଂରେଜ ସରକାରଙ୍କ ବିରୁଦ୍ଧରେ ଲୋକଙ୍କୁ ଏକଜୁଟ କରିବାରେ ପ୍ରଧାନ ଭୂମିକା ଗ୍ରହଣ କରିଥିଲେ । ସେଥିପାଇଁ ଲୋକେ ଶ୍ରଦ୍ଧାରେ ତାଙ୍କୁ ''ଜାତୀୟକବି'' ବୋଲି ଡାକୁଥିଲେ । ଜାତୀୟକବି ବୀରକିଶୋର ଦାସ ଆମ ରାଜ୍ୟର ଜଣେ ବିଶିଷ୍ଟ କବି ଓ ସ୍ୱାଧୀନତା ସଂଗ୍ରାମୀ ଥିଲେ ।

**ବାଲ୍ୟଜୀବନ**

ଆଜି ଯାହାକୁ ଜଗତସିଂହପୁର ବୋଲି କୁହାଯାଉଛି, ଆଗେ ତାକୁ ଲୋକେ ହରିହରପୁର ବୋଲି କହୁଥିଲେ । ଏ ଅଞ୍ଚଳଟି ସମଗ୍ର କଟକ ଜିଲ୍ଲାରେ ସବୁଦିଗରୁ ଆଗୁଆ ଥିଲା । ପାଠ ପଢ଼ା ଓ ଚାକିରି ସବୁ କ୍ଷେତ୍ରରେ ଏ ଅଞ୍ଚଳର ବହୁ ଲୋକ ଖୁବ୍ ବଡ଼ ଜାଗାରେ ରହିଥିଲେ । ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ, ଗୌରାଙ୍ଗ ଚରଣ ଦାସ, ନୀଳମଣି ପ୍ରଧାନ, ରମାଦେବୀ, ସରଳା ଦେବୀ ପ୍ରମୁଖ ନେତୃବୃନ୍ଦ ଏ ଅଞ୍ଚଳର ଅଧିବାସୀ । ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲାବାଲା ଘରର ଲୋକ । ସ୍କୁଲ କଲେଜରେ ପାଠ ପଢ଼ି କିଏ ଓକିଲ ହୋଇଥିଲେ ତ ଆଉ କିଏ ହାକିମ ।

ଦେଶକୁ ସ୍ୱାଧୀନ କରିବା ପାଇଁ ମହାତ୍ମାଗାନ୍ଧିଙ୍କ ଡାକରାରେ ଏମାନେ ତୁନି ହୋଇ ରହି ପାରିଲେ ନାହିଁ । ଓକିଲାତି ବ୍ୟବସାୟ ଓ

ସରକାରୀ ଚାକିରିକୁ ତୁଚ୍ଛ ମଣି ସେମାନେ ଆନ୍ଦୋଳନରେ ଯୋଗ ଦେଲେ । ଅଳକା ନଦୀ କୂଳରେ ଆଶ୍ରମଟିଏ କରି ସେଠାରେ କର୍ମୀମାନଙ୍କୁ ତାଲିମ ଦେଲେ । ସେତେବେଳେ ଏହି ଆଶ୍ରମକୁ 'ଅଳକାଆଶ୍ରମ' ବୋଲି କୁହାଯାଉଥିଲା । ଅଳକାଆଶ୍ରମରେ ସୂତାକଟା ଠାରୁ ଆରମ୍ଭ କରି ଲୁଗାବୁଣା ଓ ଅନ୍ୟ କାର୍ଯ୍ୟରେ ତାଲିମ ଦିଆଯାଉଥିଲା । ସେଠାରୁ ତାଲିମ ପାଇ ଲୋକେ ଗାଁ ଗଣ୍ଡାରେ ବୁଲି ବୁଲି ଦେଶକୁ ସ୍ୱାଧୀନ କରିବା ବିଷୟରେ ବୁଝାଉ ଥିଲେ ।

ଅଳକାଆଶ୍ରମ ପାଖାପାଖି ପୁନଙ୍ଗ ଗାଁ । ଗାଁର ଗୋଟିଏ ପାଖରେ ଅଳକା ନଦୀ । ଅନ୍ୟ ପାଖରେ ମାଛ ଗାଁ କେନାଲ । ଗାଁଟିର ପରିବେଶ ଖୁବ୍ ସୁନ୍ଦର । ବହୁ କାଳରୁ ସେ ଗାଁରେ ଜଗନ୍ନାଥ ମନ୍ଦିରଟିଏ ରହିଛି । ପୁରୀ ଭଳି ସେଠାରେ ସବୁ ଲୋକେ ଏକାଠି ବସି ଭୋଗ ପାଆନ୍ତି । ପଞ୍ଚସଖାଙ୍କ ଭିତରୁ ଅନ୍ୟତମ ସଖା ଶିଶୁ ଅନନ୍ତଙ୍କ ଶିଷ୍ୟ ବାରଙ୍ଗ ଗୋସାଇଁ ସେହି ଗାଁରେ ସାଧନା କରି ସିଦ୍ଧି ଲାଭ କରିଥିବାରୁ ସେ ଗାଁର ନାଁ ପୁନଙ୍ଗ ହୋଇଥିବା କଥା ଶୁଣାଯାଏ । ଏହି ପୁନଙ୍ଗ ଗାଁରେ ବୀରକିଶୋର ଜନ୍ମ ଲାଭ କରିଥିଲେ । ପିତା ଗୋପାଳଚନ୍ଦ୍ର ଓ ମାତା ପଦ୍ମାବତୀ ଦେବୀଙ୍କର ସେ ଥିଲେ ପ୍ରଥମ ସନ୍ତାନ ।

ଗୋପାଳଚନ୍ଦ୍ର ଗାଁରେ ଜମିଦାର ଥିଲେ । ତାଙ୍କର ଇଚ୍ଛା ଥିଲା ତାଙ୍କ ପୁଅ ବୀରକିଶୋର ପାଠ ପଢ଼ି ହାକିମ ହେବ, ଦି ପଇସା ଭଲ ରୋଜଗାର କରିବ । ଚାରିଆଡ଼େ ତାର ନାଁ ହେବ । ବୀରକିଶୋର ପିଲା

ଦିନେ ଗାଁରେ ନରହରି ଦାସଙ୍କ ଠାରୁ ଅକ୍ଷର ଶିକ୍ଷା ଓ ଅନ୍ୟାନ୍ୟ ପାଠ ପଢ଼ିଥିଲେ । ଭଲ ସ୍କୁଲରେ ପଢ଼ିଲେ ପୁଅ ଭବିଷ୍ୟତରେ ବଡ଼ ମଣିଷ ହେବ ଭାବି ଗୋପାଳ ଚନ୍ଦ୍ର, ପୁଅ ବୀରକିଶୋରଙ୍କୁ କଟକ ନେଇ ଆସିଲେ ।

## ଶିକ୍ଷାଲାଭ

ଏବେ କଟକର ଯେଉଁ ସ୍କୁଲକୁ 'ଭକ୍ତ ମଧୁ ବିଦ୍ୟାପୀଠ' ବୋଲି କୁହାଯାଉଛି ସେତେବେଳେ ତା ନାଁ ଟାଉନ୍ ଭିକ୍ଟୋରିଆ ଥିଲା । ବୀରକିଶୋରଙ୍କୁ ତାଙ୍କ ବାପା ସେଇ ସ୍କୁଲରେ ଭର୍ତ୍ତି କରିଦେଲେ । ତୁଳସୀ ଦୁଇପତ୍ରରୁ ବାସିଲାଭଳି ବୀରକିଶୋର ଜୀବନରେ ଜଣେ ବଡ଼ ମଣିଷ ହେବେ ବୋଲି ତାଙ୍କ ପିଲାଦିନରୁ ଜଣା ପଡୁଥିଲା । ଭକ୍ତକବି ମଧୁସୂଦନ ରାଓ ସେ ସ୍କୁଲର ସେକ୍ରେଟାରୀ ଥିଲେ । ସେ ମଝିରେ ମଝିରେ ସ୍କୁଲକୁ ଆସି ପିଲାମାନଙ୍କୁ ପାଠପଢ଼ା ବିଷୟରେ ପଚରାପଚରି କରନ୍ତି । ବୀରକିଶୋରଙ୍କ କଥାବାର୍ତ୍ତା, ଚାଲିଚଳଣରେ ଭକ୍ତକବି ଭାରି ଖୁସୀ ଥିଲେ । ଭବିଷ୍ୟତରେ ସେ ଜଣେ ବଡ଼ କବି ହେବେ ବୋଲି ଭକ୍ତକବି ତାଙ୍କୁ କହିଥିଲେ ।

ଟାଉନ୍ ଭିକ୍ଟୋରିଆରୁ ମାଟ୍ରିକ ପାସ କରି ବୀରକିଶୋର ରେଭେନ୍ସା କଲେଜରେ ନାଁ ଲେଖାଇଥିଲେ । ଗୋଟିଏ ମେସ୍‌ରେ ରହୁଥାନ୍ତି । ସେହି ମେସ୍‌ରେ କବି ନାରାୟଣ ମୋହନ ଦେ ମଧ୍ୟ ଥାଆନ୍ତି ।

ନାରାୟଣ ବାବୁ ବୀରକିଶୋରଙ୍କୁ ପଢ଼ାଉଥାନ୍ତି । ପଢ଼ା ମଝିରେ କବିତା ଡାକନ୍ତି ଓ ବୀରକିଶୋର ସେ ସବୁ ଲେଖନ୍ତି । ପିଲାଦିନରୁ ତାଙ୍କର ଲେଖାଲେଖି ପ୍ରତି ଆଗ୍ରହ ଥିଲା । ନାରାୟଣ ବାବୁଙ୍କ ଠାରୁ ଉତ୍ସାହ ପାଇ ସେ କବିତା ଲେଖିବା ପାଇଁ ମନ ବଳାଇଥିଲେ ।

ତାଙ୍କୁ ସେତେବେଳେ ଷୋହଳବର୍ଷ ବୟସ । କାର୍ତ୍ତିକ ପୂର୍ଣ୍ଣିମୀ ପରଦିନର ଘଟଣା । ସକାଳୁ ଗାଧୁଆ-ପାଧୁଆ ସାରି ପିଣ୍ଡାରେ ବସିଥାନ୍ତି । ସାମନାରେ ଦୁବଘାସ ଉପରେ କାକର ଟୋପାସବୁ ପଡୁଥାଏ । କାକର ଟୋପାକୁ ଲକ୍ଷ୍ୟ କରି ବୀର କିଶୋର ଲେଖିଲେ,

"କେଉଁ ଦୂରଦେଶ ବାଟୋଇ ଭାଇରେ
କେଣେ ଯିବୁ ମୋତେ କହ
ରାତିତ ପାହୁଛି ତରବର କିଆଁ
ସାଥୀ ହୋଇ ଯିବା ରହ ।
ଆସିଥିଲେ କାଲି ରଜନୀ ସୁନ୍ଦରୀ
ପିନ୍ଧି ହୀରା-ଫୁଲ ହାର
ଆସିଥିଲେ ଆମ ଜହ୍ନମାମୁ ନିଜେ
ସଙ୍ଗେ ଘେନି ସୁଧାସର ।
ଆସିଥିଲୁ କିରେ ତାଙ୍କରି ସାଙ୍ଗରେ
ପଡ଼ିଡୁ ରହିଲୁ ପଛେ
ଭଙ୍ଗୁର ଭବର ଉଚ୍ଚାସନ ଭାଇ
ବାଛି ନେଲୁ ଦୁବ ଗଛେ ।"

ଏହା ହେଉଛି ବୀରକିଶୋରଙ୍କର ପ୍ରଥମ କବିତା । ଏହା ପରେ ସେ ଆଉ ପଛକୁ ଫେରି ନାହାନ୍ତି । ତାଙ୍କରି କଲମରୁ ବାହାରିଛି ନାଉଫୁଲ, ଶଙ୍ଖଚିଲ, ବସନ୍ତବନ୍ଧୁ, ପଲ୍ଲୀକୁମାର ଓ ଶରତ ସଖା ଇତ୍ୟାଦି କେତେ କ'ଣ କବିତା ।

## ସ୍ୱାଧୀନତା ସଂଗ୍ରାମ ଓ ବୀରକିଶୋର

ବୀରକିଶୋର କଲେଜରେ ପଢୁଥିଲା ବେଳେ ଦେଶରେ ସ୍ୱାଧୀନତା ସଂଗ୍ରାମ ଜୋରସୋରରେ ଆରମ୍ଭ ହୋଇଥାଏ । ମହାତ୍ମାଗାନ୍ଧି ଆଫ୍ରିକାରୁ ଫେରିଆସି ଏ ଆନ୍ଦୋଳନର ନେତୃତ୍ୱ ନେଉଥାନ୍ତି । ବୀରକିଶୋର କଲେଜରେ ପଢୁଥିଲେ ବି ତାଙ୍କ ମନ ଛଟପଟ ହେଉଥାଏ । ହେଲେ ବାପାଙ୍କ ଇଚ୍ଛା, ପୁଅ ସରକାରୀ ଚାକିରି କରୁ । ଘରେ ବାପାଙ୍କ ଦେହ ଖରାପ । ଜମିଦାରୀ ଚାଲିଯାଇଥାଏ । ପରିବାରରେ ଅନ୍ୟ କେହି ରୋଜଗାରକ୍ଷମ ଲୋକ ନ ଥାନ୍ତି । ଆର୍ଥିକ ଅବସ୍ଥା ଖରାପ ହେବାରୁ ବାପା ତାଙ୍କୁ ଗୋଟିଏ ଚାକିରିରେ ଭର୍ତ୍ତି କରିବା ପାଇଁ ଉଦ୍ୟମ କରିଥିଲେ । ଶେଷରେ ସେ ପି.ଡବ୍ଲ୍ୟୁ. ଡି. ରେ ମାସିକ ୫୫ ଟଙ୍କା ଦରମାରେ ଚାକିରି ପାଇଲେ ।

ପରିସ୍ଥିତିରେ ପଡ଼ି ବୀରକିଶୋର ସରକାରୀ ଚାକିରିଟିଏ କଲେ । ହେଲେ ତାଙ୍କ ମନ ଯାଇ ସ୍ୱାଧୀନତା ଆନ୍ଦୋଳନରେ । ମହାତ୍ମାଗାନ୍ଧିଙ୍କ ଡାକରାରେ ବହୁ ଛାତ୍ର, ସରକାରୀ କର୍ମଚାରୀ ସେଥିରେ ଯୋଗ ଦେଉଥାଆନ୍ତି । ବୀରକିଶୋରଙ୍କ ସାନଭାଇ ବାନାମ୍ବର ସେତେବେଳକୁ

ଆନ୍ଦୋଳନରେ ସାମିଲ ହୋଇ ସାରିଥାନ୍ତି । ଯେଉଁ ଛାତ୍ରମାନେ ପଢ଼ାଛାଡ଼ି ଆନ୍ଦୋଳନରେ ମିଶୁ ଥାଆନ୍ତି, ସେମାନଙ୍କୁ 'ବାନରସେନା' ବୋଲି କୁହାଯାଉଥାଏ । ଏହି ବାନରସେନାମାନେ ଗୀତ ଗାଇ ଗାଇ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରୁଥାନ୍ତି ।

ବୀରକିଶୋର ପି.ଡବ୍ଲ୍ୟୁ.ଡି.ରେ କିରାଣୀ ଚାକିରୀ କରୁଥିବା ସମୟରେ ପଞ୍ଜାବରେ ଜାଲିଓ୍ୱାନାବାଗ ହତ୍ୟାକାଣ୍ଡ ଘଟିଥିଲା । ଏଥିରେ ଗୋରା ପୋଲିସ ନିରୀହ ଭାରତୀୟଙ୍କ ଉପରେ ଅନ୍ୟାୟଭାବେ ଗୁଳିଚାଳନା କରିବାରୁ ବହୁବ୍ୟକ୍ତି ନିହତ ହେଲେ । ଶତାଧିକ ଗୁଳିମାଡ଼ରେ ଆହତ ହୋଇ ଅକର୍ମଣ୍ୟ ହୋଇଗଲେ । ଗୋରା ଫଉଜଙ୍କ ସେନାପତି ଡାୟାରଙ୍କ ନିର୍ଦ୍ଦୟ ଆଚରଣରେ ସାରା ଦେଶରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ଇଂରେଜ ସରକାରଙ୍କ ସହିତ ଅସହଯୋଗ କରିବାକୁ ମହାତ୍ମାଗାନ୍ଧି ଦେଶବାସୀଙ୍କୁ ଡାକରା ଦେଲେ । ସେତେବେଳେର ଏହି ଆନ୍ଦୋଳନକୁ ''ଅସହଯୋଗ ଆନ୍ଦୋଳନ'' ବୋଲି କୁହାଯାଉଥିଲା ।

ଜାଲିଓ୍ୱାନାବାଗ ହତ୍ୟାକାଣ୍ଡରେ ଯୁବକ ବୀରକିଶୋରଙ୍କ ମନରେ ଗଭୀର ଆଘାତ ଦେଲା । ଏକ ପକ୍ଷରେ ବାପାଙ୍କ ଇଚ୍ଛାକୁ ପୂରଣ କରିବା ପାଇଁ ଚାକିରିରେ ରହିବା, ଅନ୍ୟପକ୍ଷରେ ଦେଶର ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବା ପାଇଁ ନିଜର ପ୍ରବଳ ଆଗ୍ରହ ତାଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କଲା । ନିଜ ମନର ଭାବକୁ ପ୍ରକାଶ କରିବାକୁ ଯାଇ

ଅଫିସରେ ବସିଥିବା ଅବସ୍ଥାରେ ସେ କେତେଗୁଡ଼ିଏ ଗୀତ ଲେଖିଥିଲେ । ପରେ ଗୀତ ଗୁଡ଼ିକ ଗୋଟିଏ ବହି ଆକାରରେ ପ୍ରକାଶ କରିବା ପାଇଁ ସେ ମନ ବଳାଇଥିଲେ । କିନ୍ତୁ କିଏ ଛାପିବ ତାଙ୍କ ବହି ? ଇଂରେଜ ଶାସନ ଅମଳରେ ଇଂରେଜମାନଙ୍କ ବିରୁଦ୍ଧରେ ବହି ଛପା ଯିବ ? ଅସମ୍ଭବ କଥା । ବୀରକିଶୋର କିନ୍ତୁ ଛାଡ଼ିବାର ପାତ୍ର ନୁହଁନ୍ତି । ଶେଷକୁ ସେ ଗୋଟିଏ ଉପାୟ ପାଇଲେ । ସେତେବେଳେ ବ୍ରଜସୁନ୍ଦର ଦାସ ଲାଟ ସଭାର ସଭ୍ୟ ଥାଆନ୍ତି । କଟକରେ ତାଙ୍କର "ମୁକୁର ପ୍ରେସ" ନାମରେ ଗୋଟିଏ ଛାପାଖାନା ଥାଏ । ଜଣେ ମ୍ୟାନେଜର ସେ ଛାପାଖାନା ଖବରସବୁ ବୁଝୁଥାଆନ୍ତି । ମ୍ୟାନେଜର ବାବୁ ଥିଲେ ବୀରକିଶୋରଙ୍କର ବନ୍ଧୁ । ଦି' ଜଣ ମିଶି ସ୍ଥିର କଲେ ବହିଟି ଛପେଇଦେବା, ପରେ ଯାହା ହେବ ଦେଖାଯିବ । ବହିଟିର ନାଁ ଦିଆଗଲା "ମୋହନବଂଶୀ" । ବୀରକିଶୋର ଗୀତଗୁଡ଼ିକର ଲେଖକ ହୋଇଥିଲେ ବି ସେ ସରକାରୀ ଚାକିରୀ କରୁଥିବାରୁ ବହିଟିର ଲେଖକ ଓ ପ୍ରକାଶକ ବାନାୟର ବୋଲି ଲେଖିଲେ ଏବଂ ବହିଟିର ମୁଦ୍ରାକର ବି.ଏସ୍.ଦାସ ବୋଲି ରହିଲା । ଶେଷରେ ବହିଟି ମଧୁସୂଦନ ଦାସଙ୍କୁ ଉତ୍ସର୍ଗ କରାଗଲା ।

'ମୋହନବଂଶୀ' ବହିଟି ଛଦ୍ମନାମରେ ଛପା ହେଲେ ବି ସେ ବହିଟିର ଲେଖକ ବୀରକିଶୋର ବୋଲି ଚାରିଆଡ଼େ ଜଣା ପଡ଼ିଗଲା । କିନ୍ତୁ ସରକାରଙ୍କ ପାଖରେ କିଛି ପ୍ରମାଣ ନ ଥିବାରୁ ତାଙ୍କ ବିରୁଦ୍ଧରେ କିଛି କରି ପାରୁ ନଥାନ୍ତି କିମ୍ବା ତାଙ୍କୁ ଚାକିରିରୁ ବାହାର କରୁ ନ ଥାଆନ୍ତି । ତଥାପି ଚାରିଆଡ଼େ ଖୋଳତାଡ଼ ଆରମ୍ଭ ହେଲା । ବ୍ରିଟିଶ ସରକାର

ରାଗରେ ବହିଟିକୁ ବେଆଇନ ଘୋଷଣା କରିଦେଲେ । 'ମୋହନବଂଶୀ' ଆଉ ସାଧାରଣରେ ବିକ୍ରି ହୋଇପାରିବ ନାହିଁ ବୋଲି ହୁକୁମ୍‌ଜାରି କଲେ । କିନ୍ତୁ ସେତେବେଳକୁ ଅନେକ ଡେରି ହୋଇଯାଇଥିଲା । ସରକାରଙ୍କ ହୁକୁମ ଜାରି ପୂର୍ବରୁ ବହିତକ ବିକ୍ରି ହୋଇଯାଇଥିଲା । ବୀରକିଶୋର ବହିଟିର ଦାମ ତିନିଅଣା' ରଖିଥିଲେ । କେବଳ ଗଞ୍ଜାମ ଜିଲ୍ଲାରେ ତିନି ହଜାର ବହି ବିକ୍ରି ହୋଇଥିଲା ।

ଘଟଣାକ୍ରମେ 'ମୋହନବଂଶୀ' ବହିଟି ଗୋପବନ୍ଧୁ ଦାସଙ୍କ ନିକଟରେ ପହଞ୍ଚିଥିଲା । ସେ ଖବର ନେଇ ବୀରକିଶୋର ଏ ବହିଟି ଲେଖିଥିବା କଥା ଜାଣିପାରିଲେ । ସେ ନିଜେ ଜଣେ କବି ହୋଇଥିବାରୁ ବୀରକିଶୋରଙ୍କ ଉପରେ ଖୁବ୍ ଖୁସି ହୋଇ ତାଙ୍କୁ ଡକାଇଥିଲେ । କଥାବାର୍ତ୍ତା ବେଳେ ଦାସେ ଆପଣେ ପଚାରିଲେ, ''ସରକାରୀ ଚାକିରି ଛାଡ଼ିବ ?'' ବୀରକିଶୋର ତତ୍‌କ୍ଷଣାତ୍ ଉତ୍ତର ଦେଇଥିଲେ, ''ଚାକିରି ତ ମୋତେ ଅଳ୍ପଦିନେ ଛାଡ଼ିବ, ମୁଁ ସେଇଦିନଟିକୁ ଅପେକ୍ଷା କରି ରହିଛି ।'' ସେହିଦିନଠାରୁ ଗୋପବନ୍ଧୁଙ୍କ ସହିତ ବୀରକିଶୋରଙ୍କର ସମ୍ପର୍କ ବଢ଼ିଗଲା । ବୀରକିଶୋର ମଧ୍ୟ ବୁଝିଗଲେ ଯେ, ଆଉ ଅଧିକଦିନ ସରକାରୀ ଚାକିରିରେ ରହିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ଯାହା ଅସୁବିଧା ହେଉ ପଛକେ ତାଙ୍କୁ ଦେଶର ମୁକ୍ତି ସଂଗ୍ରାମରେ ଯୋଗ ଦେବାକୁ ହେବ ।

ଶେଷରେ ସେଇଆ ହେଲା । ଘରର ଖରାପ ଆର୍ଥିକ ପରିସ୍ଥିତି ସତ୍ତ୍ୱେ ୧୯୨୨ ମସିହାରେ ବୀରକିଶୋର ସରକାରୀ ଚାକିରିରୁ ଇସ୍ତଫା

ଦେଇଥିଲେ । ସେ ତାଙ୍କ ଇସ୍ତଫା ପତ୍ରରେ ଲେଖିଥିଲେ, ''ଏ ଦୁର୍ବଳ ଅତ୍ୟାଚାରୀ ସରକାର ଅଧୀନରେ ମୁଁ ଆଉ ରହିବାକୁ ଚାହେଁନା । ମୋର ସ୍ୱାଧୀନ ସରକାର ଗଢ଼ାହେଲେ ମୁଁ ଯଦି ବଞ୍ଚିଥାଏ, ତେବେ କିଛିଦିନ ଚାକିରି କରିବି ।''

## ବୈବାହିକ ଜୀବନ

ବୀରକିଶୋର ସରକାରୀ ଚାକିରି ଛାଡ଼ିବାର ଅଳ୍ପ କେଇମାସ ପରେ ତାଙ୍କର ବିବାହ ହୋଇଗଲା । ସରକାରୀ ଚାକିରି ସହିତ ଯେଉଁ କେତେକ ଲୋକ ଓକିଲାତି ବ୍ୟବସାୟ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ଥିଆନ୍ତି ସେମାନଙ୍କ ମଧ୍ୟରେ କଟକର ଜଣାଶୁଣା ଓକିଲ ଧର୍ମାନନ୍ଦ ପଟ୍ଟନାୟକ ଥିଲେ ଅନ୍ୟତମ । ଧର୍ମାନନ୍ଦଙ୍କ ଘର କଟକ ଜିଲ୍ଲାର 'ନୋଦା' ଗାଁରେ । ସେ 'ନୋଦା' ଅଞ୍ଚଳର ଜମିଦାର ଥିଲେ । ତାଙ୍କର ବଡ଼ଭାଇ ଥିଲେ ବିଶିଷ୍ଟ ଆଇନଜୀବୀ ବୀରକିଶୋର ରାୟ । ଶ୍ରୀ ରାୟ ପରେ ଓଡ଼ିଶା ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି ହୋଇଥିଲେ । ଧର୍ମାନନ୍ଦ ଚାହିଁଥିଲେ ନିଜର ଝିଅ ଶାରଦାଙ୍କ ପାଇଁ ଉଚ୍ଚଶିକ୍ଷିତ ଓ ଧନୀ ଜ୍ୱାଇଁଟିଏ ପାଇ ପାରିଥାନ୍ତେ । କିନ୍ତୁ ସେ ତା' ନକରି ବୀରକିଶୋରଙ୍କ ଭଳି ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କ ସହ ନିଜ ଝିଅର ବିବାହ କରିବାକୁ ସ୍ଥିର କଲେ । ଧର୍ମାନନ୍ଦ ଅସହଯୋଗ ଆନ୍ଦୋଳନର ସମର୍ଥକ ଥିବାରୁ କାହାରି କଥା ନ ଶୁଣି ବୀରକିଶୋରଙ୍କ ସହିତ ଶାରଦା ଦେବୀଙ୍କର ବିବାହ କରାଇଥିଲେ ।

ଧର୍ମାନନ୍ଦ 'ନୋଦା' ଗ୍ରାମର ଜମିଦାର ଥିବାରୁ ତାଙ୍କ ଜ୍ୱାଇଁ ଖୁବ୍ ଜାକଜମକରେ ଶୋଭାଯାତ୍ରାରେ ଆସିବେ ବୋଲି ତାଙ୍କ ପରିବାର ଲୋକେ ଏବଂ ଗାଁ ବାଲା ଭାବିଥିଲେ । କିନ୍ତୁ ବୀରକିଶୋର ଭିନ୍ନ ଧରଣର ମଣିଷ ଥିଲେ । ସେ ବେଶଭୂଷା ଓ ଆଡ଼ମ୍ବରରେ ବିଶ୍ୱାସ କରୁ ନଥିଲେ । ତେଣୁ ସେ ସାଦାସିଧା ଭାବରେ ବରବେଶ ପିନ୍ଧି ଯେତେବେଳେ ଶଶୁର ଘର ଗାଁରେ ପହଁଞ୍ଚିଲେ, ସେଥିରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଜମିଦାରଙ୍କ ଜ୍ୱାଇଁ ! ବାଜା, ରୋଷଣି ନାହିଁ, ଖାଲି ଆସିଛି । ଚାରିଆଡ଼େ ଲୋକେ କଥାବାର୍ତ୍ତା ହେଲେ । କିନ୍ତୁ ବଣିଆ ସୁନାକୁ ଚିହ୍ନିଲାଭଳି ଶଶୁର ଧର୍ମାନନ୍ଦ ଜ୍ୱାଇଁ ବୀରକିଶୋରଙ୍କ ପ୍ରକୃତ ଗୁଣର ପରିଚୟ ପାଇସାରିଥିବାରୁ ସେ କୌଣସି କଥାରେ ବିଚଳିତ ହେଲେ ନାହିଁ ।

ବୀରକିଶୋର ଖଦଡ଼ ଲୁଗା ପିନ୍ଧି ସାଧାରଣ ବେଶରେ ବେଦୀରେ ବରଣ ହେଲାବେଳେ ବାରଲୋକେ ତେର କଥା କହିଲେ । ଏହି କଥା ମନେ ପକାଇ ଦେଇ ଶାରଦା ଦେବୀଙ୍କ ସାନଭଉଣୀ ତାଙ୍କ ପାଖକୁ ଲେଖିଥିଲେ, ''ଅପା, ତୁ ଗଲାଦିନୁ ମୋ ମନ ଭଲ ନାହିଁ । ସବୁବେଳେ କାନ୍ଦ ମାଡୁଛି । ତୁ କେବେ ଆସିବୁ ? ଭିଣୋଇଙ୍କି ମୋର ପ୍ରଣାମ । ତାଙ୍କୁ ଆମ ଗାଁରେ କେହି ପସନ୍ଦ କଲେ ନାହିଁ । ବଡ଼ ଚାକିରିଆ, ଦାମୀ ପୋଷାକରେ ଆସିଥିଲେ ସିନା ସମସ୍ତେ ଜାଣିଥାନ୍ତେ ବଡ଼ଲୋକର ପୁଅ ବୋଲି ! ତାଙ୍କ ବାପା ତ ସେଠା ଜମିଦାର । ସେ ଛୋଟ କାଟିଆ ଲୋକଭଳି ଦେଖାଯାଉଥିଲେ ଓ ଓଲୁଙ୍କ ପରି ଚୁପ୍ ହୋଇ ବସୁଥିଲେ

କାହିଁକି ? ଆମ ଘରେ ସମସ୍ତେ ମନ ଦୁଃଖରେ ଅଛନ୍ତି ।''

ଏ ଚିଠିଟି ପଢ଼ିବା ମାତ୍ରେ ରସିକ ବୀରକିଶୋର ସାଙ୍ଗେ ସାଙ୍ଗେ କବିତାରେ ତା'ର ଉତ୍ତର ଲେଖିଥିଲେ –

''କଥା ପଢ଼ିବାରୁ ଆଜି କହୁଛି ଫିଟାଇ
ମୋ କଥାକୁ ମନେ ଘେନା କରିବ ଗୋ ନାହିଁ ।
ବହି ଖଣ୍ଡେ ଲେଖିଥିଲି ମୋର ନିଜ ହସ୍ତେ
କଟକ, ପୁରୀ, ବାଲେଶ୍ୱରରେ ଜାଣନ୍ତି ସମସ୍ତେ ।
ସରକାର ଲେଖା ଦେଖି ଗଲେ ମୋତେ ଡରି
ଚାକିରି ଖଣ୍ଡି ଛଡ଼ାଇ ଦେଲେ ମୁକ୍ତ କରି ।
ଶ୍ୱାନ ସିନା ବନ୍ଧା ହୁଏ ଲୁହା ଜଞ୍ଜିରରେ
ସିଂହ କେବେ ବନ୍ଧା ହେବ କହ ଗୋ ଚହିଁରେ ?
କୁଟୀର ନିବାସୀ ହୋଇ ଯାପିବି ଜୀବନ
ଟଙ୍କା ପାଇଁ ଗୋଲାମିରେ ନାହିଁ ମୋର ମନ ।

* * * *

ସାରା ଓଡ଼ିଶାରେ ମତେ ଜାଣନ୍ତି ସମସ୍ତେ,
ତମେ ପଛେ ଓଲୁ ବୋଲି ଡାକୁଥାଅ ମୋତେ ।
ଘୁଷୁରି ଜାଣିବେ କାହୁଁ ପାଚିଲା କଦଳୀ
କୁକୁରକୁ କେବେ ଭଲ ଲାଗେ ରସାବଳୀ ?
ଶବରୁଣୀ ଚିହ୍ନନ୍ତି କି ହୀରାକୁ ସଙ୍ଗାତ
ହୀରା ଛାଡ଼ି କାଇଁଚକୁ ବଢ଼ାନ୍ତି ସେ ହାତ ।

ନୋବା ତିମିରିରେ ମୋତେ ଚିହ୍ନିବେ କି ଲୋକେ
ଖରାଦିନେ ନ ମିଳଇ ଯହିଁ ପାଣି ଢୋକେ ।
କୂଅରେ ନବୁଡ଼େ ନୋଟା ନାହିଁଟି ସଡ଼କ
ବର୍ଷାଦିନେ ଯମ ଡରେ ନ ଥାଏ ମଡ଼କ ।
ଗଛ ଡାଳେ ଚଢ଼ି ଯହିଁ ବସନ୍ତି ପୋଖରୀ
ସମସ୍ତେ ଗୋଲାମ ଯହିଁ ସର୍କାରୀ ଚାକିରି ।''

ବୀରକିଶୋରଙ୍କୁ ବାହା କରି ଦେଇ ବାପା ଗୋପାଳଚନ୍ଦ୍ର ଭାବିଥିଲେ ପୁଅ ଏଣିକି ଘରମୁହାଁ ହେବ । ଚାକିରି-ବାକିରିରେ ମନ ଦେବ । ତାଙ୍କର ତ ଇଚ୍ଛା ପୁଅ ବଡ଼ ଚାକିରି କରୁ । ଦି-ପଇସା ଅଧିକା ରୋଜଗାର କରୁ । କିନ୍ତୁ ବୀରକିଶୋରଙ୍କ ମନ ତ ଅନ୍ୟ ରକମର । ସେ କୁଆଡୁ ଚାକିରିରେ ମନ ଦେବେ ? ଥରେ ଯିଏ ସରକାରୀ ଚାକିରିର ମୋହ ଛାଡ଼ିଛି, ସେ କି ଆଉ ଥରେ ଖୁଆଡ଼ରେ ପଶିବ ? ବୀରକିଶୋରଙ୍କ କ୍ଷେତ୍ରରେ ସେଇଆ ହେଲା । ସେ ଆଉ ପଛକୁ ଫେରି ଅନେଇଲେ ନାହିଁ । ମହାତ୍ମାଗାନ୍ଧିଙ୍କ ଡାକରାରେ ସ୍ୱାଧୀନତା ଆନ୍ଦୋଳନରେ ପଶିଗଲେ ।

ସେତେବେଳକୁ ବହୁ ସ୍କୁଲ କଲେଜ ପିଲା ପଢ଼ାଛାଡ଼ି 'ବାନରସେନା' ଭାବରେ ଗାନ୍ଧିବାଣୀ ପ୍ରଚାର କରୁଥାନ୍ତି । ବ୍ରିଟିଶ ସରକାର ପକ୍ଷରୁ ପୁଲିସବାଲାଏ ସେମାନଙ୍କୁ ଧରି ଆଣି ମାଡ଼ ଦେଉଥାନ୍ତି । ବେତମାଡ଼ରେ ଅନେକଙ୍କ ହାତ ପାପୁଲି ଫାଟି ଯାଇ ଲହୁ ବୋହୁଥାଏ । ପିଲାମାନଙ୍କ ବୟସ ଏଗାର-ବାରରୁ ପନ୍ଦର ବରଷ ମଧ୍ୟରେ । ସେମାନଙ୍କୁ

ଦେଖିଲେ ଯେ କୌଣସି ଲୋକର ଦୟା ଆସିବ । କିନ୍ତୁ ଗୋରା ହାକିମ ଅନ୍ୟ ରକମର ଲୋକ ଥିଲେ । ତାଙ୍କ ମନରେ ଦୟା-ମାୟା ବୋଲି କିଛି ନଥିଲା । ଲୋକଙ୍କୁ ଯେ କୌଣସି ପ୍ରକାରେ ଜବତ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ତେଣୁ ପିଲାମାନଙ୍କୁ ବେତରେ ପିଟି ଡରେଇବା ପାଇଁ ଗୋଟିଏ ଉପାୟ ପାଞ୍ଚିଲେ । କାଳେ ଜଣେ ଲୋକ ପ୍ରତିଦିନ ପିଲାଙ୍କୁ ପିଟିବାକୁ ଚାହିଁବ ନାହିଁ, ସେଥିପାଇଁ ସେ ବାଛି ବାଛି ଲୋକ ରଖିଲେ, ଯିଏ କି ନିଷ୍ଠୁର ଭାବେ ପିଲାଙ୍କୁ ବାଡ଼େଇ ପାରିବ ।

ଦିନକର ଘଟଣା । ସେତେବେଳେ ସ୍ୱରାଜ୍ୟ ଆଶ୍ରମ ଜାତୀୟ ଆନ୍ଦୋଳନର ମୂଳପୀଠ ଥିଲା । ସେଇଠୁ ସବୁ କଥାର ନିଷ୍ପତ୍ତି ହେଉଥିଲା । ସବୁ ନେତାଏ ସେଠାରେ ରୁଣ୍ଡ ହୋଇ କ'ଣ କ'ଣ କରାଯିବ ସ୍ଥିର କରୁଥିଲେ । ସେଦିନ ଅନେକ ଗୁଡ଼ିଏ ପିଲା ମଦ, ଗଞ୍ଜେଇ ଦୋକାନ ଆଗରେ ଯାଇ ରୁଣ୍ଡ ହେବେ, ପିକେଟିଂ କରିବେ । ସେସବୁ ଦୋକାନ ଖୋଲେଇ ଦେବେ ନାହିଁ । ଏତେ ପିଲାଙ୍କୁ ନେଇ କୋଉ ଜେଲରେ ରଖାଯିବ ? ପୁଲିସବାଲାଙ୍କ ଭିତରେ ଭାଳେଣି ପଡ଼ିଲା । ସେମାନେ ସ୍ଥିର କଲେ ପିଲାଙ୍କୁ ମାରିଲେ ସେମାନେ ପଳାଇବେ । କିନ୍ତୁ ପିଲା କି ଛାଡ଼ିବା ଜନ୍ତୁ ? ଜଣକ ପରେ ଜଣେ ଆସି ବେତ ମାଡ଼ ଖାଉଥାଆନ୍ତି । ସେମାନଙ୍କ ମନରେ ସାହାସ ଆଣିବା ପାଇଁ ବୀରକିଶୋର ଗୋଟିଏ ଗୀତ ଲେଖିଥିଲେ –

"ଭାଇହେ, ମାର କେତେ ବେତ ମାରିବ
ଦେଶ ଲାଗି ଆମେ ଜୀବନ ଦେଇଛୁ

ତୁମେ କି ଆମକୁ ପାରିବ ?''

ଏଭ ଗୀତଟି ଗାଇ ଗାଇ ଜଣକ ପରେ ଜଣେ ବେତମାଡ଼ ଖାଇବାକୁ ଆସୁଥାନ୍ତି । ପିଲାଙ୍କ ହାତରୁ ରକ୍ତ ବୋହି ଯାଉଥାଏ । ସେ ଦୃଶ୍ୟ ଦେଖିଲେ ପଥର ମଧ୍ୟ ପାଣି ଫାଟି ଯିବ, କିନ୍ତୁ ଗୋରା ସାହେବଙ୍କର ଟିକିଏ ହେଲେ ଦୟା ହେଉ ନଥାଏ । ପିଲାଏ ତାଙ୍କ ଧମକରେ ଦବି ନ ଯାଇ ବୀରକିଶୋରଙ୍କର ଆଉ ଗୋଟିଏ ଗୀତ ବୋଲୁଥାନ୍ତି –

''ତୁମେ ଶୁଣିଥିବ କର୍ଣ୍ଣେ କୋରାନ,
ଅବା ବେଦ, ବାଇବେଲ, ପୁରାଣ
ମଦରେ ମୁକତି ଲେଖାଅଛି କାହିଁ
ବୁଝାଇ ଆମକୁ କହିବ ।''

କେବଳ କଟକର ସ୍ୱରାଜ୍ୟ ଆଶ୍ରମ ନୁହେଁ, ବାନରସେନା ମାନେ ଚାରିଆଡ଼େ ମାତି ବୀରକିଶୋରଙ୍କ ଗୀତ ଗାଇ ଗାଇ ଆନ୍ଦୋଳନକୁ ବଞ୍ଚେଇ ରଖିଥିଲେ । ନେତାମାନଙ୍କ ଭାଷଣ ଅପେକ୍ଷା ବୀରକିଶୋରଙ୍କ ଗୀତ ଲୋକଙ୍କୁ ଅଧିକ ମାତ୍ରାରେ ଆନ୍ଦୋଳନରେ ମିଶିବା ପାଇଁ ଉତ୍ସାହ ସୃଷ୍ଟି କରୁଥିଲା । ବ୍ରିଟିଶ ସରକାର ଅତ୍ୟାଚାର ସମ୍ପର୍କରେ ସେ ଲେଖିଥିଲେ –

''ମାରିବ ସେ କେତେ ମାରୁ ବଳେ
ବାହାରିଚୁ ଆମେ ଦଳେ ଦଳେ
ଜୀବନକୁ ଆମେ ପାଣି ଛଡ଼ାଇଛୁ

ନ ଛାଡ଼ିବୁ କେବେ ଆମ ପନ୍ଥା
ବନ୍ଧୁ, ସେଇ ଚିନ୍ତା ।''

ବାନରସେନା-ପିଲାମାନଙ୍କୁ ବେତ ମାଡ଼ ହେଉଥିଲା ବେଳେ ବାହାରେ ଲୋକେ ଜମା ହୋଇ ''ମହାତ୍ମାଗାନ୍ଧିକୀ ଜୟ'' ଧ୍ୱନି ଦେଉଥାନ୍ତି । ବୀରକିଶୋରଙ୍କ ରଚିତ ବିଭିନ୍ନ ଗୀତ ଗାଇ ଗାଇ ବାନରସେନାଏ ହସି ହସି ମାଡ଼ ଖାଉଥାଆନ୍ତି । ମାଡ଼ ଖାଇଲା ବେଳେ ସେମାନେ ଗାଉ ଥାଆନ୍ତି –

ଆମେ ଡରୁ ନାହିଁ କେବେ ମରଣେ
ମନ ରଖିଅଛୁ ବିଭୁ ଚରଣେ
ତୁମ ଆମ କଥା ତାଙ୍କ ମିଶଲରେ
ଦିନେ ତ ବିଚାର ହୋଇବ ।''

ସେଦିନ ଯେଉଁମାନେ ବାନରସେନା ଭାବରେ ବ୍ରିଟିଶ ସରକାରର ବେତମାଡ଼ ଖାଇ ହାତ ଫଟେଇ ଥିଲେ, ପରେ ଦେଶ ସ୍ୱାଧୀନ ହେବାରୁ ସେମାନଙ୍କ ଭିତରୁ ଅଧିକାଂଶ ଦେଶର ବିଭିନ୍ନ କ୍ଷେତ୍ରରେ ବେଶ୍ ନାଁ କରିଥିଲେ । ବାନରସେନାଙ୍କ ମନବଳ ବଢ଼ାଇବା ପାଇଁ ବୀରକିଶୋର ବିଭିନ୍ନ ଗୀତ ଲେଖି କ୍ରମେ 'ଜାତୀୟକବି' ଭାବରେ ସମ୍ମାନିତ ହେଲେ, ବୀରକିଶୋରଙ୍କ ଗୀତ ଏବେ ବି ଗାଁ ଗହଳରେ ଖୁବ୍ ପରିଚିତ । ବିଭିନ୍ନ ସଭାସମିତିରେ ସେ କାଳର ଲୋକେ ସେଥିରୁ ପଦେ ଅଧେ ବୋଲି ପୁରୁଣା କଥାକୁ ମନେ ପକାଇ ଦେଉଛନ୍ତି ।

## ଲୁଣମରା ଅଭିଯାନ

୧୯୩୦ ମସିହା ସ୍ୱାଧୀନତା ଆନ୍ଦୋଳନର ଏକ ଉଲ୍ଲେଖନୀୟ ବର୍ଷ । ଏଇବର୍ଷ ମହାତ୍ମାଗାନ୍ଧି ବ୍ରିଟିଶ ସରକାରଙ୍କ ଆଇନକୁ ଅମାନ୍ୟ କରି ଲୁଣ ମାରିବା ପାଇଁ ଦେଶବାସୀଙ୍କୁ ଡାକରା ଦେଇଥାନ୍ତି । ଏଥିପାଇଁ ସେ ଯେଉଁ ଯାତ୍ରା ଆରମ୍ଭ କରିଥିଲେ, ଇତିହାସରେ ତାକୁ 'ଦାଣ୍ଡିଯାତ୍ରା' ବୋଲି କୁହାଯାଏ । ଆମ ଓଡ଼ିଶାରେ ବାଲେଶ୍ୱର ଜିଲ୍ଲାର 'ଇଞ୍ଚୁଡ଼ି' ରେ ଲୁଣମରା ହେବାପାଇଁ ସ୍ଥିର ହୋଇଥାଏ । ସେଥିପାଇଁ ସେତେବେଳକାର ଜାତୀୟ ଯୋଦ୍ଧା ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଲୋକେ ଲୁଣ ମାରିବାକୁ ଯିବା ପାଇଁ ସ୍ଥିର ହୋଇଥାଏ । ସେ ଦଳରେ ଅନେକ ଯୁବକ ସାମିଲ ହୋଇଥାନ୍ତି । ସେମାନଙ୍କ ମନରେ ଆଶଙ୍କା ଥିଲେ ବି ଭୟ ନ ଥାଏ । ମନରେ ଅପୂର୍ବ ସାହସ ନେଇ ସେମାନେ ଚାଲିଥାନ୍ତି । ବୀରକିଶୋରଙ୍କ ଗୀତ –

"ଭାଇ, ମରିବା ତ ଦିନେ ମରିବା
ଛେଳି ମେଣ୍ଢା ପରି ପାଞ୍ଚଣକୁ ଡରି
ଘୁଷୁରି ପରି କି ଚରିବା
ମରିବା ତ ଦିନେ ମରିବା ।"

ସେମାନଙ୍କୁ ଅଧିକ ପ୍ରେରଣା ଯୋଗାଉଥାଏ । ଗୋପବନ୍ଧୁ ଚୌଧୁରୀଙ୍କ ସହିତ ବାନର ସେନାମାନେ ହସି ହସି ବୀରକିଶୋରଙ୍କ ଗୀତ ଗାଇ ଗାଇ ଚାଲିଥାନ୍ତି –

"ଲୁଣ ମାରିବାକୁ ଚାଲ ଭାଇ
ମହାତ୍ମା ଆଦେଶ ପାଳ ହେ
ଆମ ଘର ପାଖେ ବେଢ଼ିଛି ସାଗର
ଲୁଣ ମୁଠେ ପାଇଁ ନାହିଁ ଅଧିକାର
ଏ ଅନ୍ୟାୟ, ଏ ଅନୀତି କୁହଭାଇ
ସହିଥିବା କେତେ କାଳ ହେ ।"

ଗାନ୍ଧିଜୀଙ୍କ ନେତୃତ୍ୱରେ ଯେଉଁ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା, ସେଥିରୁ ଗୋରା ଶାସନର କଳା ଆଇନ ଭାଙ୍ଗିବାକୁ ମହାତ୍ମାଗାନ୍ଧି ଆହ୍ୱାନ ଦେଇଥିଲେ । ସେଥିପାଇଁ ସେ ଆନ୍ଦୋଳନକୁ "ଆଇନଅମାନ୍ୟ" ଆନ୍ଦୋଳନ ବୋଲି କୁହାଯାଏ ।

୧୯୩୦ ମସିହା ଅପ୍ରେଲ ୬ ତାରିଖ ଦିନ ଓଡ଼ିଶାରେ ଏହି ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସତ୍ୟ ପ୍ରତି ଆଗ୍ରହ ପ୍ରକାଶ କରି ଯେଉଁମାନେ ଏ ଆନ୍ଦୋଳନରେ ଯୋଗ ଦେଇଥିଲେ ସେମାନଙ୍କୁ 'ସତ୍ୟାଗ୍ରହୀ' ବୋଲି କୁହାଯାଉଥିଲା । ସେତେବେଳେ କଟକର କାଠଯୋଡ଼ି ନଈ କୂଳରେ ଗୋପବନ୍ଧୁ ଚୌଧୁରୀଙ୍କର ଘର ଥିଲା । ସେଇ ଘର ପାଖରୁ ସତ୍ୟାଗ୍ରହୀମାନେ ଲଣ୍ଡୁଡ଼ି ବାହାରିଥିଲେ । ହଜାର ହଜାର ଲୋକ । ସେମାନଙ୍କ ମନରେ ଅପୂର୍ବ ସାହସ । ଦଳରେ ଥାଆନ୍ତି ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀଙ୍କ ଧର୍ମ ପତ୍ନୀ ଶ୍ରୀମତୀ ରମାଦେବୀ ଚୌଧୁରୀ ଓ ଆହୁରି ଅନେକ । ଆଗଚିଉଛି

ସେତେବେଳେ ମହାନଦୀ ଉପରେ ଯିବା ଆସିବା କରିବା ପାଇଁ ପୋଲ ନଥିଲା । କି ଖରା, କି ବର୍ଷା ଲୋକେ ଡଙ୍ଗାରେ ନଈ ପାରି ହୋଇ ସେ ପାରିକି ଯାଉଥିଲେ । ସତ୍ୟାଗ୍ରହୀ ଦଳ ବାଖରାବାଦରୁ ବାହାରି ଯୋବ୍ରାରେ ପହଞ୍ଚିଲା ବେଳକୁ ସେମାନଙ୍କ ସଂଖ୍ୟା ବଢ଼ି ଅସୁମାରି ଲୋକରେ ପହଞ୍ଚିଥିଲା । ଏଇ ସତ୍ୟାଗ୍ରହୀଙ୍କ ପାଇଁ ବୀରକିଶୋରଙ୍କ ରଚିତ "ଦରିଆ ଦଖଲ କରିଯିବ କିଏ ଆସ" ଗୀତ ବୋଲା ହେଉଥାଏ ।

"ଆସରେ ଆଜି ଆସ,
ଆଜି ଆସ
ଦରିଆ ଦଖଲ କରିଯିବ
କିଏ ଆସ ।
କଳ କଳିଯୁଗ ହେଲା ବଳୀୟାନ
ମନୁଷ୍ୟ କରଇ ମନୁଷ୍ୟ ଶିକାର
ବିଦେଶୀ ଶାସନ
କଲା ଶମଶାନ
ଆମ ଦେବତା କନକ ଦେଶ
ଆସରେ ଆଜି ଆସ ....

* * * *

ଥିଲେ ତ ପଠାଣ ଥିଲେ ମରହଟ୍ଟା
କେହି ତ ନ ଥିଲେ ଏଡ଼େ ଚିତାକଟା

ନିଆଁ ପାଣି ଚୁଲି ଚାଉଳ ସବୁଠି
କା'ର ନ ଥିଲା ଟିକସ ଶୋଷ
ଆସରେ ଆଜି ଆସ--- ।

* * * *

ବୁଦ୍ଧ ଚଇତନ ମହମ୍ମଦ ଯୀଶୁ
ଏ ଶାସନ କଲା ସମସ୍ତଙ୍କୁ ପଶୁ
ତୋପ ବନ୍ଧୁକ ଯେ ଦେବତା ଏହାର
ମିଥ୍ୟା ଅନୀତି ଭକତି ରସ
ଆସରେ ଆଜି ଆସ---

* * * *

ଏ ଶାସନ ଆଜି କରି ଖଣ୍ଡ ଖଣ୍ଡ
ପ୍ରଜାହାତେ ଦେଇଯିବା ରାଜ ଦଣ୍ଡ ।
ତବେ ବସୁମାତା ଉପରେ ଦେବତା
ସଦା ଗାଇବେ ଆମରି ଯଶ
ଦରିଆ ଦଖଲ କରିଯିବ କିଏ ଆସ ।''

ବୀରକିଶୋରଙ୍କର ଏହି ଗୀତଟି ପ୍ରତ୍ୟେକ ଆନ୍ଦୋଳନକାରୀଙ୍କ ମନକୁ ଛୁଇଁଥିଲା । ସରକାରଙ୍କ ଅତ୍ୟାଚାରକୁ ଖାତିର ନ କରି ''ଆମ ସମୁଦ୍ରରୁ ଆମେ ଲୁଣ ମାରିବା'' ପାଇଁ ଲୋକେ ହଜାର ହଜାର ସଂଖ୍ୟାରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ।

ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଚାଲିଥିଲା ବେଳେ ବୀରକିଶୋର ଯେଉଁସବୁ ଗୀତ ଲେଖିଥିଲେ ସେସବୁକୁ ଏକାଠି କରି ଗୋଟିଏ ବହି ଆକାରରେ ଛପେଇବା ପାଇଁ ମନ ବଳେଇଥିଲେ । କିନ୍ତୁ ଗୋରା ଶାସନରେ ସେମାନଙ୍କ ଶାସନ ବିରୁଦ୍ଧରେ ଲେଖା ଗୀତକୁ କିଏ ବା ଛପେଇବ ? ଏ ସମ୍ପର୍କରେ ଜାତୀୟକବି ନିଜେ ଲେଖିଛନ୍ତି ।

"ଶେଷରେ ବହିଟିକି ଲେଖକ ବୀରକିଶୋର ନାମରେ ଛପାଇଲି । କୌଣସି ପ୍ରେସ ନିଜ ନାମ ଦେଇ ଏହାକୁ ଛପାଇବା ପାଇଁ ରାଜି ହେଲେ ନାହିଁ । ତେଣୁ ଏହାକୁ ଗୋଟିଏ ପ୍ରେସର ଛଦ୍ମନାମ ଦେଇ ଛପା ହେଲା ପ୍ରେସର ନାମ ରହିଲା 'ରେଙ୍ଗୁନ୍ ବିପ୍ଳବୀ ପ୍ରେସ' । ମୁଦ୍ରକ ମଧ ଛଦ୍ମବେଶୀ-ଇ ୟାଂପୁଙ୍ଗୀ । ପ୍ରକାଶକ ହେଲେ 'କାମଦେବ' । ସେତେବେଳେ ବହିଟିର ଦାମ୍ ଥିଲା ଏକ ଅଣା । "ରଣଦୁନ୍ଦୁଭି" ଯେତେବେଳେ ପ୍ରକାଶିତ ହେଲା, ବ୍ରିଟିଶ ସରକାର ସଙ୍ଗେ ସଙ୍ଗେ ତାକୁ ବେଆଇନ କରିଦେଲେ ଓ ସବୁ ଛପା ବହିକୁ ବାଜ୍ୟାପ୍ତ କରି ଦେବା ପାଇଁ ଆମ ଗୃହ ଓ ମୋ ଶଶୁରାଳୟ ଖାନତଲାସ କରିଥିଲେ । ମାତ୍ର ସେତେବେଳକୁ ବହି ସବୁ ବିକ୍ରି ହୋଇଯାଇଥିଲା" ।

'ରଣଦୁନ୍ଦୁଭି' ବହିଟି ବାରପୃଷ୍ଠାର ଥିଲା । ଏଥିରେ ଥିବା ଗୀତଗୁଡ଼ିକ ଖୁବ ଆଦର ଲାଭ କରିଥିଲା । ଏହି ବହିଟି ଲେଖିବା ଅପରାଧରେ ବୀରକିଶୋରଙ୍କ ନାଁରେ ବ୍ରିଟିଶ ସରକାର ମକଦ୍ଦମା କଲେ । ରାଜଦ୍ରୋହ ଅପରାଧରେ ତାଙ୍କୁ ଜେଲ୍‌ଦଣ୍ଡ ହୋଇଥିଲା ।

ଲବଣ ସତ୍ୟାଗ୍ରହ ବେଳେ ସତ୍ୟାଗ୍ରହୀ ହଜାର ହଜାର ଲୋକଙ୍କୁ ସରକାର ଗିରଫ୍ କରି ନେଲେ । କିନ୍ତୁ ସେଥିରେ ଆନ୍ଦୋଳନ କମିବା ପରିବର୍ତ୍ତେ ବଢ଼ିବାରେ ଲାଗିଲା । ଶେଷରେ ବ୍ରିଟିଶ ସରକାର ମହାତ୍ମା ଗାନ୍ଧିଙ୍କ ସମେତ ଅନେକ ନେତାଙ୍କୁ ଖଲାସ କରିଦେଲେ । ବ୍ରିଟିଶ ସରକାର ଭାରତର ନେତାଙ୍କ ସହିତ ସାଲିସ କରିବାକୁ ଚାହିଁଲେ । ଲଣ୍ଡନରେ ଗୋଟିଏ ବୈଠକ ଡକାଇ ସେମାନଙ୍କ ସହିତ ଆଲୋଚନା କରିବାକୁ ସ୍ଥିର କଲେ । ମହାତ୍ମାଗାନ୍ଧିଙ୍କୁ ସେ ବୈଠକରେ ଯୋଗଦେବାକୁ ଆମନ୍ତ୍ରଣ କଲେ ।

ମହାତ୍ମାଗାନ୍ଧି ଗୋଲଟେବୁଲ ବୈଠକରେ ଯୋଗ ଦେବା ପାଇଁ ବିଲାତ ଗଲେ । ସେତିକି ବେଳେ ବୀରକିଶୋର 'ରଣଭେରୀ' ନାଁରେ ବହିଟିଏ ଲେଖିଲେ । ସେ ବହିଟିରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଭାରତର ଜନସାଧାରଣଙ୍କ ପାଇଁ ଅନେକ ପ୍ରେରଣାପୂର୍ଣ୍ଣ ଗୀତ ସବୁ ରହିଥିଲା । 'ରଣଭେରୀ', ପାଞ୍ଚ ପୃଷ୍ଠାର ବହିଟିଏ । ତାର ଦାମ୍ ଥିଲା ମାତ୍ର ପଇସାଏ । ସେ କାଳରେ ପଇସା, ଦୋପଇସି, ଅଣି, ଦୋଅଣି, ସୁକି ଓ ଆଠଣି ଇତ୍ୟାଦି ଚଳୁଥିଲା । ଲୋକେ ପଇସାଟିଏ ନେଇ ବୀରକିଶୋରଙ୍କ ବହିଟି ନେଇ ସେଥିରୁ ଅନେକ କଥା ଜାଣିଲେ । ଏହିପରି ଭାବରେ ବୀରକିଶୋର ନିଜ କଲମ ମାଧ୍ୟମରେ ସ୍ୱାଧୀନତା ଆନ୍ଦୋଳନର କଥା ଲୋକଙ୍କ ପାଖରେ ପହଞ୍ଚାଇ ଦେଉଥିଲେ ।

ମହାତ୍ମାଗାନ୍ଧି ଗୋଲ ଟେବୁଲ ବୈଠକରେ ଯୋଗଦେବାକୁ ଲଣ୍ଡନ ଯାଇଥିଲେ ସିନା, ସେ ବୈଠକ ସଫଳ ହେଲା ନାହିଁ ।

ମହାତ୍ମାଗାନ୍ଧି ଲଣ୍ଡନରୁ ଫେରି ବିଦେଶୀ ବର୍ଜନ ପାଇଁ ଡାକରା ଦେଲେ । ସେ ଡାକରାରେ, ବିଦେଶରେ ତିଆରି ହୋଇ ଆସୁଥିବା ବିଭିନ୍ନ ଜିନିଷକୁ ବ୍ୟବହାର ନ କରିବାକୁ ମହାତ୍ମାଗାନ୍ଧି ଲୋକଙ୍କୁ ବୁଝାଉଥାନ୍ତି । ତାଙ୍କ ଡାକରାରେ ସାମିଲ ହୋଇ ବୀରକିଶୋର ଲେଖିଲେ –

"ଆମେ ନ କିଣିବୁ ବିଦେଶୀ ଚିଜ
ଆଉ ନ ଆସିବ ତାଙ୍କ ଜାହାଜ
ତାଙ୍କ ଠକପଣ ଛଡ଼ାଇ ଦେବୁ --

* * * *

ବିଦେଶୀ ଲଣ୍ଡନ ପାନିଆ ଛତା
ବିଦେଶୀ କଣ୍ଢେଇ ସାବୁନ ଯୋତା
ବିଦେଶୀ ଦରବ ପାଶ ନ ଯିବୁ, ପାଶ ନ ଯିବୁ

* * * *

ଆମେ ଦରିଆରୁ ମାରିବୁ ଲୁଣ
ଗୋରା ବେପାରୀଙ୍କ ଭାଙ୍ଗିବୁ ଟାଣ
ତାଙ୍କ ବୁଦ୍ଧି ବଳ ହଟାଇ ଦେବୁ ।"

**ଗୀତ ଲେଖି ଜେଲ୍ ଦଣ୍ଡ**

ସ୍ୱାଧୀନତା ସଂଗ୍ରାମ ବେଳେ ଆନ୍ଦୋଳନ କରି ବହୁ ଲୋକ ଜେଲ୍ ଯାଇଥିଲା ବେଳେ କେବଳ ଗୀତ ଲେଖି ବୀରକିଶୋର ଦୀର୍ଘ

ସାତବର୍ଷ କାଳ କରାଗାର ମଧ୍ୟରେ ରହିଥିଲେ । ଦେଶର ମୁକ୍ତି ଆନ୍ଦୋଳନ ସମୟରେ ସମଗ୍ର ଦେଶରେ ବୀରକିଶୋରଙ୍କ ଭଳି ଦୃଷ୍ଟାନ୍ତ ବିରଳ । ଏହାଛଡ଼ା ସରକାରଙ୍କ ବିରୁଦ୍ଧରେ ବିଭିନ୍ନ ଗୀତ ଲେଖିବା ଅଭିଯୋଗରେ ତାଙ୍କ ଘର ସତର ଥର ଖାନ୍‌ତଲାସ ହୋଇଥିବା କଥା ସେ ନିଜେ ପ୍ରକାଶ କରିଛନ୍ତି ।

ସାତବର୍ଷର ଜେଲ୍ ଜୀବନ ଭିତରୁ ବୀରକିଶୋର ଦୀର୍ଘ ତିନି ବର୍ଷରୁ ଅଧିକ କାଳ କଟାଇଥିଲେ ବ୍ରହ୍ମପୁର କେନ୍ଦ୍ରୀୟ ଜେଲ୍‌ରେ । ସେତେବେଳେ ବ୍ରହ୍ମପୁର କେନ୍ଦ୍ର ଜେଲ ଏକପ୍ରକାର ବିଦ୍ୟାଳୟରେ ପରିଣତ ହୋଇଥିଲା । ଇଂରେଜ ସରକାରଙ୍କ ସମସ୍ତ ପ୍ରକାର ଅତ୍ୟାଚାର, ଅମାନୁଷିକ ବ୍ୟବହାର ସତ୍ତ୍ୱେ ଏହି ଜେଲ୍‌ରେ ଥିବା ଜାତୀୟ ନେତାମାନେ ନବାଗତ ବନ୍ଦୀମାନଙ୍କୁ ବିଭିନ୍ନ ବିଷୟରେ ଶିକ୍ଷାଦାନ କରୁଥିଲେ । ଜେଲ୍ ଭିତରେ ପ୍ରାର୍ଥନା ସଭା ଠାରୁ ଆରମ୍ଭ କରି ବ୍ୟାୟାମ, ଡ୍ରିଲ୍ ଇତ୍ୟାଦି ନିୟମିତ ଭାବେ କରାଯାଉଥିଲା । ଆନ୍ଦୋଳନର ଭବିଷ୍ୟତ କର୍ମପନ୍ଥା ବିଷୟରେ ମଧ୍ୟ ବିଭିନ୍ନ ସମୟରେ ଚର୍ଚ୍ଚା ହେଉଥିଲା ।

## ଜେଲ୍ ଭିତରେ ଗୀତ ଲେଖା

ବ୍ରହ୍ମପୁର କେନ୍ଦ୍ରୀୟ ଜେଲ ଭିତରେ ଦୀର୍ଘ ତିନି ବର୍ଷ ରହଣି ସମୟରେ ବୀରକିଶୋର ଅନେକ ଗୁଡ଼ିଏ ଗୀତ ଲେଖି ଯାଇଛନ୍ତି । ସେଥିମଧ୍ୟରୁ କେତେକ ପ୍ରକାଶ ପାଇଥିଲା ବେଳେ ଆହୁରି ଅନେକ ଛପା ହୋଇପାରି ନାହିଁ । ତାଙ୍କର ଜେଲଜୀବନ ଥିଲା ବେଶ୍

ଅନୁଭୂତିପୂର୍ଣ୍ଣ । ସେ ଅନୁଭୂତିରୁ କିଛିଅଂଶ ମନେ ପକାଇ ବୀରକିଶୋରଙ୍କର ଜଣେ ଘନିଷ୍ଠ ସହଯୋଗୀ ତଥା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଦୋଳ ଗୋବିନ୍ଦ ପ୍ରଧାନ କହନ୍ତି – "୧୯୪୩ ମସିହା ଜାନୁଆରୀ ମାସ ଛବିଶ ତାରିଖର ଘଟଣା । ବ୍ରହ୍ମପୁର ଜେଲ୍ ଭିତରେ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ତ୍ରିରଙ୍ଗ ପତାକା ଉତ୍ତୋଳନ କରାଯାଇଥାଏ । ମହାପ୍ରତାପୀ ବ୍ରିଟିଶ ସରକାର, ଯାହାଙ୍କ ଶାସନରେ ସୂର୍ଯ୍ୟ କେବେ ଅସ୍ତ ହୁଅନ୍ତି ନାହିଁ ବୋଲି କୁହାଯାଏ, ତାଙ୍କ ଶାସନ କାଳରେ ପୁଣି ଜେଲ୍ ଭିତରେ ତ୍ରିରଙ୍ଗ ପତାକା ଉଡ଼ିବ ? ଅସମ୍ଭବ କଥା । ଉପରଓଳି ସମୟ ପ୍ରାୟ ଦିଟା ହେଇ ହେବ । ଜେଲ୍‌ର ଆସି କହିଲେ ଉପରୁ ଚାପ ପଡୁଛି ପତାକା ଓହ୍ଲାଇବାକୁ ପଡ଼ିବ । ବନ୍ଦୀମାନେ ଜେଲ୍‌ରଙ୍କୁ ଉତ୍ତର ଦେଲେ "ଆଉତ ତିନି ଘଣ୍ଟା ପରେ ପାଞ୍ଚଟା, ବାଜିଗଲେ ପତାକା ଓହ୍ଲାଇଯିବ, ତରତର କାହିଁକି ?"

ଜେଲ୍‌ରଙ୍କ ପରେ ସବ୍-କଲେକ୍ଟର ଆସି ପତାକା ଓହ୍ଲାଇ ଦେବାକୁ ଅନୁରୋଧ କଲେ । ତାଙ୍କ ପରେ ଜେଲ୍ ସୁପରିନଟେଣ୍ଡେଣ୍ଟ ଓ ଶେଷରେ କଲେକ୍ଟର ଆସି ଅତିଶୀଘ୍ର ପତାକା ଓହ୍ଲାଇ ଦେବାକୁ ଚଡ଼ାଗଳାରେ ହୁକୁମ ଦେଲେ । ସେତେବେଳକୁ ସମୟ ପ୍ରାୟ ତିନିଟା ବାଜି ସାରିଥିଲା । ସେଠାରେ ଉପସ୍ଥିତ ଥିବା ନେତାମାନେ କଲେକ୍ଟରଙ୍କୁ କହିଲେ, "ଆଉ ତ ମାତ୍ର ଦୁଇଘଣ୍ଟା ରହିଲା, ପାଞ୍ଚଟା ବାଜିଗଲେ ଆମେ ବଳେ ବଳେ ପତାକା ଓହ୍ଲାଇ ଦେବୁ । ଏଥିରେ କଲେକ୍ଟର ଖୁବ୍ ଅସନ୍ତୁଷ୍ଟ ହେଲେ । ବନ୍ଦୀମାନଙ୍କୁ ପାନେ ଚଖେଇବା ପାଇଁ ସେ ମନେ ମନେ ଚିନ୍ତା କରି ଅନ୍ୟମାନଙ୍କ ସହିତ ମସୁଧା କଲେ ।

ସାଙ୍ଗେ ସାଙ୍ଗେ ଜେଲ୍ ଭିତରେ ଗୋଟିଏ ବେଞ୍ଚ ପଡ଼ିଲା । ତା'ଉପରେ ପ୍ରାଥମିକ ସରଞ୍ଜାମ, ଔଷଧ, ବ୍ୟାଣ୍ଡେଜ, ଗଜ୍ ଓ ତୁଳା ଇତ୍ୟାଦି ରଖାଗଲା । ସେଇଥିରୁ ଅନୁମାନ କରାଯାଉଥାଏ ଯେ କିଛି ଗୋଟାଏ ଅଘଟଣ ଘଟିବାକୁ ଯାଉଛି । ପରିସ୍ଥିତିର ମୁକାବିଲା କରିବା ପାଇଁ ବନ୍ଦୀମାନେ ମଧ୍ୟ ନିଜକୁ ସଜାଡ଼ି ନେଲେ । ଯାହା ହେଲେ ବି ପତାକା ଓହ୍ଲାଯିବ ନାହିଁ, ଏଇ କଥାରେ ସମସ୍ତେ ଅଟଳ ରହିଲେ । ଯେଉଁମାନେ ବ୍ୟାରେକ ଭିତରେ ଥିଲେ ବାହାରକୁ ଚାଲିଆସିଲେ ।

ସେ ସମୟରେ ସୁଧୀର ଘୋଷଙ୍କ ନେତୃତ୍ୱରେ ଜେଲ୍ ଭିତରେ ସେବା ଦଳ ତାଲିମ ଦିଆଯାଉଥାଏ । ପରିସ୍ଥିତିର ମୁକାବିଲା କରିବାକୁ ଯାଇ ସେବା ଦଳ ସ୍ୱେଚ୍ଛାସେବକମାନେ ପରସ୍ପରକୁ ଧରାଧରି ହୋଇ ପତାକା ଖୁମ୍ବର ଚାରିପାଖରେ ଗୋଲ ହୋଇ ବସିଲେ ଯେପରି ସେମାନଙ୍କୁ ଡେଇଁ କେହି ଜଣେ ବାହାରକୁ ବାହାରୁ ପଶି ପାରିବ ନାହିଁ ।

ଚାରିଟା ବେଳକୁ ଗୋରା ସର୍ଜେଣ୍ଟ, ଲାଠି ଓ ବନ୍ଧୁକଧାରୀ ଫୋର୍ସ ଆସି ପହଞ୍ଚିଗଲେ । ବେଳକୁ ବେଳ ଉତ୍ତେଜନା ପ୍ରକାଶ ପାଉଥାଏ । ଗୋରା ସର୍ଜେଣ୍ଟ ପୁଣି ଥରେ ହୁକୁମ ଦେଲେ ପତାକା ଓହ୍ଲାଇ ଦେବାକୁ । କିନ୍ତୁ ତାଙ୍କ ହୁକୁମ ତାମିଲ ହେଲା ନାହିଁ । ଶେଷରେ ସାଢ଼େ ଚାରିଟାରେ ଲାଠି ଚାର୍ଯ ପାଇଁ ହୁକୁମ ହେଲା । ସେବାଦଳ ତାଲିମ୍ ମୁତାବକ ସମସ୍ତେ ନିଜ ନିଜ ମୁଣ୍ଡ ତଳକୁ କରି ବସିଥାନ୍ତି । ଲାଠି ମାଡ଼ ହେଲେ ମୁଣ୍ଡଟା ଅନ୍ତତଃ ରହିଯାଇ ପାରିବ ।

ସାଢ଼େ ଚାରିଟାରୁ ପାଞ୍ଚଟା ପର୍ଯ୍ୟନ୍ତ ଅଧଘଣ୍ଟାଏ କାଳ ଲାଠିମାଡ଼

ହେଲା । ଲାଠିଧାରୀ ପୁଲିସ ଗୋଟିଏ ପାଖରୁ ପିଟି ପିଟି ଅନ୍ୟପଟକୁ ଯାଉଥାନ୍ତି ଓ ଅନ୍ୟ ପଟୁ ପୁଣି ପିଟି ପିଟି ଏ ପଟକୁ ଆସୁଥାନ୍ତି । ଏହିପରି ଭାବରେ ତିନିଥର ଲାଠିମାଡ଼ ହେଲା ବେଳକୁ ଘଣ୍ଟାରେ ପାଞ୍ଚଟା ବାଜିଯାଇଥାଏ । ପତାକାକୁ ଓହ୍ଲାଇ ଦିଆଗଲା । କିନ୍ତୁ ସେତେବେଳକୁ ବନ୍ଧୁକଧାରୀ ପୁଲିସ ପ୍ରସ୍ତୁତ ହୋଇ ସାରି ଥାଆନ୍ତି । ଆଉ ଅଳ୍ପ ବିଳମ୍ବ ହୋଇଥିଲେ ହୁଏତ ଗୁଳି ଫୁଟି ଥାଆନ୍ତା ଏବଂ ତାର ପରିଣତି କ'ଣ ହୋଇଥାନ୍ତା ସେ କଥା ଚିନ୍ତା କରିବା ମଧ କଷ୍ଟକର ବ୍ୟାପାର ।

ଲାଠିମାଡ଼ରେ ପ୍ରାୟ ଅଶି ଜଣ ବନ୍ଦୀ ଆହତ ହୋଇଥିଲେ । ବୀରକିଶୋର ମଧ ସେଥିରୁ ବର୍ତ୍ତି ନ ଥିଲେ । ତାଙ୍କ ତଳିପେଟରେ ମାଡ଼ ବସିଥିଲା ଓ ସେ ବେହୋସ ହୋଇଯାଇଥିଲେ । ଦିନକ ପରେ ତାଙ୍କର ଚେତା ଫେରିଲା । ବନ୍ଦୀମାନଙ୍କ ମନରେ ପୁଣି ସାହସ ସୃଷ୍ଟି କରିବା ଉଦ୍ଦେଶ୍ୟରେ ସେ ଲେଖିଲେ –

''ମୋର ମନ ମତେ ପଚାରେ
ଆସିଥିଲୁ କିରେ ଦିନ କାଟିବାକୁ
ଖାଇପିଇ ଶୋଇ ସୁଖ ଶଯ୍ୟାରେ
ମୋର ମନ ମତେ ପଚାରେ ।''

ବୀରକିଶୋରଙ୍କ ଗୀତରେ ଆହତ ବନ୍ଦୀମାନଙ୍କ ମନରେ ଅପୂର୍ବ ସାହସ ସୃଷ୍ଟି ହୋଇଥିଲା ଓ ସେମାନେ ଇଂରେଜ ଶାସନ କବଳରୁ ଦେଶ ମାତୃକାକୁ ଉଦ୍ଧାର କରିବା ପାଇଁ ପୁଣି ଥରେ ଶପଥ ନେଲେ ।

## ଆଦିବାସୀ ନେତା ଲକ୍ଷ୍ମଣ ନାୟକଙ୍କୁ ଫାଶୀ

କୋରାପୁଟ ଆଦିବାସୀ ନେତା ଲକ୍ଷ୍ମଣ ନାୟକଙ୍କ ଫାଶୀ ଘଟଣା ଓଡ଼ିଶା ଜାତୀୟ ଆନ୍ଦୋଳନର ସବୁଠାରୁ ସ୍ମରଣୀୟ ଘଟଣା । ଏକ ସାମାନ୍ୟ ଅପରାଧ ପାଇଁ ଲକ୍ଷ୍ମଣ ନାୟକଙ୍କୁ ରାଜଦ୍ରୋହୀ ଭାବେ ବିଚାର କରାଯାଇ ଫାଶୀ ହୁକୁମ ହୋଇଥାଏ । ଏକ ରୁଦ୍ଧ ଦ୍ୱାର କୋଠରୀରେ ଲକ୍ଷ୍ମଣ ନାୟକ ଜୀବନର ଶେଷ ଦିନକୁ ଅପେକ୍ଷା କରିଥାନ୍ତି ।

୧୯୪୩ ମସିହା ମାର୍ଚ୍ଚ ମାସ ୨୮ ତାରିଖ । ଜେଲ୍‌ର ଆସି କହିଦେଇ ଗଲେ ତା' ପରଦିନ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଯିବ । ଏ ଖବର ଶୁଣି ସମଗ୍ର ଜେଲ୍‌ରେ ଶ୍ମଶାନର ନୀରବତା ଖେଳିଗଲା । କାହାରି ମୁହଁରେ କଥା ନାହିଁ । ସମସ୍ତେ ସମସ୍ତଙ୍କ ମୁହଁକୁ ଚାହୁଁଥାନ୍ତି । ଜେଲ୍‌ର କହିଲେ ଯେଉଁମାନେ ଲକ୍ଷ୍ମଣ ନାୟକଙ୍କୁ ଦେଖା କରିବାକୁ ଚାହାନ୍ତି, ସେମାନେ ତା' କରିପାରନ୍ତି । ଜେଲ୍‌ର ନିୟମ ଅନୁଯାୟୀ ଫାଶୀ ହୁକୁମ ପାଇଥିବା ବ୍ୟକ୍ତିର ଶେଷ ଇଚ୍ଛା ପୂରଣ କରାଯାଏ । କିନ୍ତୁ ଲକ୍ଷ୍ମଣ ନାୟକ ତାଙ୍କ ଜୀବନର କୌଣସି ଶେଷ ଇଚ୍ଛା ପୂରଣ କରିବାକୁ କହି ନଥିଲେ ।

ଜେଲ୍‌ରଙ୍କ କହିବା ଅନୁଯାୟୀ ଗୋପବନ୍ଧୁ ଚୌଧୁରୀ, ବିଶ୍ୱନାଥ ଦାଶ, ନବକୃଷ୍ଣ ଚୌଧୁରୀ, ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ପ୍ରାଣକୃଷ୍ଣ ପଢ଼ିଆରୀ, ସଦାଶିବ ପାଣିଗ୍ରାହୀ ଓ ବୀରକିଶୋର ଦାସ ପ୍ରମୁଖ ନେତୃବୃନ୍ଦ ଲକ୍ଷ୍ମଣ ନାୟକଙ୍କୁ ଦେଖା କରିବାକୁ ଗଲେ । ଫାଶୀ

ଆସାମୀଙ୍କ ପାଇଁ ସ୍ୱତନ୍ତ୍ର ଭାବେ ତିଆରି ସେଲ୍ ଭିତରେ ଲକ୍ଷ୍ମଣ ନାୟକ, ବାହାରେ ଏମାନେ । କାହାରି ପାଟିରୁ କିଛି ବାହାରୁ ନାହିଁ । କିଛି ସମୟର ନୀରବତା ଭଙ୍ଗ କରି ଲକ୍ଷ୍ମଣ ନାୟକ କହିଲେ – ''ଚନ୍ଦ୍ର ସୂର୍ଯ୍ୟ ଯଦି ସତ୍ୟ, ଭାରତମାତା ସ୍ୱାଧୀନ ହେବା ମଧ ସେହିପରି ସତ୍ୟ । ତେବେ ମୋ ମନରେ ଦୁଃଖ ରହିଗଲା, ମୁଁ ସ୍ୱାଧୀନ ଭାରତ ଦେଖି ପାରିଲି ନାହିଁ । ମୋ ପିଲାମାନଙ୍କୁ ଖବର ଦେବ ମୁଁ ସ୍ୱାଧୀନ ଭାରତରେ ଜନ୍ମ ଗ୍ରହଣ କରିବି ।''

ଲକ୍ଷ୍ମଣ ନାୟକଙ୍କ ଶେଷ କଥାରେ ସମସ୍ତଙ୍କ ଆଖିରୁ ଲୁହ ଝରୁଥାଏ । ଜଣେ ନିରୀହ ବ୍ୟକ୍ତିଙ୍କୁ ବିନାଦୋଷରେ ବ୍ରିଟିଶ ସରକାର ଫାଶୀ ଖୁଣ୍ଟରେ ଝୁଲାଇ ଦେବାକୁ ଯାଉଥିବାରୁ ସମସ୍ତଙ୍କ ମନରେ ଭୀଷଣ କ୍ରୋଧ ହେଉଥାଏ । କିନ୍ତୁ ଲକ୍ଷ୍ମଣ ନାୟକଙ୍କ ଧୈର୍ଯ୍ୟ ଓ ସାହସରେ ସେମାନେ ଆଶ୍ଚର୍ଯ୍ୟ ହୋଇଥିଲେ । ରାତି ପାହିଲେ ଲୋକଟି ଫାଶୀ ପାଇବ, ତା'ର ଜୀବନ ଦୀପ ଲିଭିଯିବ, ଅଥଚ ସେଥିପାଇଁ ତା'ର ଭୟ ନାହିଁ କି ଚିନ୍ତା ନାହିଁ । କେବଳ ଗୋଟିଏ ଚିନ୍ତା, ଭାରତମାତା କେବେ ସ୍ୱାଧୀନ ହେବ ।

ଲକ୍ଷ୍ମଣ ନାୟକଙ୍କ ଶେଷ କଥା ବ୍ରହ୍ମପୁର ଜେଲ୍‌ରେ ଥିବା ବନ୍ଦୀମାନଙ୍କ ମନରେ ନୂତନ ପ୍ରେରଣା ଓ ଉତ୍ସାହ ସୃଷ୍ଟି କଲା । ସେମାନେ ଗୋରା ଫଉଜର ଅତ୍ୟାଚାରକୁ ଖାତିର ନ କରି ନୂତନ ଯୁଗର ସୂର୍ଯ୍ୟ ଉଦୟକୁ ଅପେକ୍ଷା କରି ରହିଲେ ।

ଲକ୍ଷ୍ମଣ ନାୟକଙ୍କ ସହିତ ଶେଷ ସାକ୍ଷାତ କରି ନେତାମାନେ ନିଜ ନିଜ ଜାଗାକୁ ଫେରିଗଲେ । କିନ୍ତୁ ବୀରକିଶୋର ଏଥିରେ ଆଉ ଚୁପ୍ ହୋଇ ବସି ପାରିଲେ ନାହିଁ । ଲକ୍ଷ୍ମଣ ନାୟକଙ୍କ ଶେଷ କଥା ତାଙ୍କ କାନରେ ତୁହାଇ ତୁହାଇ ବାଜୁଥାଏ । ବୀରକିଶୋରଙ୍କ ମନରେ କୌଣସି ଭାବନା ଆସିଲେ ସେ ଗୁଡ଼ାଖୁ ବ୍ୟବହାର କରନ୍ତି । ଗୁଡ଼ାଖୁ ଘଷିଲା ବେଳେ ନିଜ ମନର ଭାବନାକୁ ରୂପରେଖ ଦିଅନ୍ତି । ତଳେ ସପ ଉପରେ ବସି ତକିଆଟିଏ ପେଟ ତଳେ ଦେଇ ସେ ତାଙ୍କର କଲମ ଚଳାନ୍ତି ଓ ସେଇଥିରୁ ସୃଷ୍ଟି ହୁଏ ଅସୁମାରୀ ଗୀତ ।

ଲକ୍ଷ୍ମଣ ନାୟକଙ୍କ ଶେଷ କଥାକୁ ଗୀତରେ ପ୍ରକାଶ କରି ସେ ଲେଖିଲେ,

''ମୋର ଯିବାର ବେଳ ତ ଆସି ହେଲାଣି,
ଭାଇ, ହସି ହସି ମତେ ଦିଅ ମେଲାଣି,
ମନରେ ରହିଲା ମନର ଯା' କଥା
କି କହିବି ଭାଇ, ମୋ ମରମ ବ୍ୟଥା ।
ମୁଁ ସ୍ୱାଧୀନ ଭାରତେ ଦେଖି ନ ପାରିଲି
ଯା ଲାଗି ବାନ୍ଧିଲି ମୋର ଆଶା ନିଶୁଣି
ମୋର ଯିବାର ବେଳ ତ ଆସି ହେଲାଣି ।
ଯେଉଁଦିନ ହେଲେ ଯାଆନ୍ତି ତ ଦିନେ
ସେଥିକି ସୂଚନା ନାହିଁ ମୋର ମନେ

ମୋ ପିଲା ପିଲିଙ୍କି କହିବ ଏତିକି
ମୁଁ ସ୍ୱାଧୀନ ଭାରତେ ନିଶ୍ଚେ ଫେରିବି ପୁଣି
ମୋର ଯିବାର ବେଳ ତ ଆସି ହେଲାଣି ।''

ବୀରକିଶୋରଙ୍କ ଏ ଗୀତରେ ଜେଲ୍ ଭିତରେ ଥିବା କୌଣସି ବନ୍ଦୀ ଆଉ କୋହ ସମ୍ଭାଳି ପାରିଲେ ନାହିଁ । ସମସ୍ତେ ଭୋ ଭୋ କାନ୍ଦି ଉଠିଲେ । ବୀରକିଶୋରଙ୍କ ଗୀତର ଭାବ ଯେତିକି ମର୍ମସ୍ପର୍ଶୀ ଥିଲା ସେଗୁଡ଼ିକର ଅର୍ଥ ସେହିପରି ମନଛୁଆଁ ଥିଲା । କିଛି ସମୟର କନ୍ଦାକଟା ପରେ 'ମହାତ୍ମାଗାନ୍ଧି କି ଜୟ', 'ଭାରତମାତା କି ଜୟ' ଧ୍ୱନି ଦେଇ ବନ୍ଦୀମାନେ ଭବିଷ୍ୟତ କର୍ମପନ୍ଥା ସ୍ଥିର କରିବା ନିମନ୍ତେ ନିଜ ନିଜ ଭିତରେ ଆଲୋଚନା ଆରମ୍ଭ କଲେ ।

ତା'ପରଦିନ । ୧୯୪୩ ମସିହା ମାର୍ଚ୍ଚ ମାସ ଅଣତିରିଶ ତାରିଖ । ସୂର୍ଯ୍ୟ ଉଦୟ ପୂର୍ବରୁ ନିର୍ଦ୍ଦୟ ବ୍ରିଟିଶ ସରକାରଙ୍କ ହୁକୁମରେ ନିରୀହ ଆଦିବାସୀ ନେତା ଲକ୍ଷ୍ମଣ ନାୟକଙ୍କୁ ବ୍ରହ୍ମପୁର ଜେଲ୍ ଭିତରେ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଗଲା ।ସକାଳେ ବନ୍ଦୀମାନଙ୍କ ଦ୍ୱାର ଖୋଲିଲାବେଳକୁ ଲକ୍ଷ୍ମଣ ନାୟକଙ୍କ ପ୍ରାଣ ହୀନ ଶରୀରଟି ଫାଶୀ ଖୁଣ୍ଟରେ ଝୁଲୁଥିଲା । ଲକ୍ଷ୍ମଣ ନାୟକ ଯେଉଁ ସେଲରେ ରହି ଫାଶୀ ପାଇଥିଲେ, ଦେଶ ସ୍ୱାଧୀନ ହେବା ପରେ ସେ ସେଲ୍‌କୁ ସେହିପରି ଭାବରେ ରଖାଯାଇଛି ।

ବ୍ରହ୍ମପୁର ଜେଲ୍‌ରେ ବିଭିନ୍ନ ବୟସର ବନ୍ଦୀମାନେ ଏକାଠି ରହୁଥିଲେ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେମାନଙ୍କ ମଧ୍ୟରେ ଏକ

ସମ୍ପର୍କ ବଢ଼ି ଯାଉଥାଏ । ଦିନ ଯେତିକି ଗଡୁଥାଏ, ସେମାନଙ୍କ ମନରେ ସେତିକି ଆଶଙ୍କା ସୃଷ୍ଟି ହେଉଥାଏ । ସତେ କ'ଣ ଆଉ ଦେଶ ସ୍ୱାଧୀନ ହେବ ନାହିଁ ? ଆମେ କ'ଣ ଆଉ ଜେଲ୍‌ରୁ ଖଲାସ ହୋଇ ଖୋଲା ପବନ ଟିକେ ପାଇ ପାରିବୁ ନାହିଁ – ଇତ୍ୟାଦି ଇତ୍ୟାଦି ଭାବନା ସେମାନଙ୍କ ମନରେ ସୃଷ୍ଟି ହେଉଥାଏ । ଘରେ ଥିବା ପିଲା ପିଲିଙ୍କ କଥା ଭାବି ସେମାନେ ଅନେକ ସମୟରେ ବ୍ୟଥିତ ହେଉ ଥାଆନ୍ତି ।

ବନ୍ଦୀମାନଙ୍କ ଭିତରେ ଥିବା କମ ବୟସର କଏଦୀମାନେ ଅନେକ ସମୟରେ ଆସି ବୀରବାବୁଙ୍କୁ ପଚାରନ୍ତି, ସେମାନେ କେବେ ଖଳାସ ହେବେ ? ଦେଶରୁ ପରାଧୀନତାର ଏ ଅନ୍ଧକାର କେବେ ଦୂର ହେବ ? ବୀରବାବୁ ଉତ୍ତରରେ କହୁଥାନ୍ତି, ''ମୁଁ କ'ଣ ଜ୍ୟୋତିଷ ନା ପଣ୍ଡିତ, ତମକୁ କହିବି କେବେ ଖଲାସ ହେବ ?'' ମୁହଁରେ ସିନା କହି ଦିଅନ୍ତି, କିନ୍ତୁ ମନର ଭାବନାକୁ ଚପାଇ ପାରନ୍ତି ନାହିଁ । ସାଙ୍ଗେ ସାଙ୍ଗେ ଗୁଡ଼ାଖୁ ଘଷା ଓ ଯୁବକ ଦୋଳଗୋବିନ୍ଦଙ୍କୁ ଡାକରା କାଗଜ କଲମ ଆଣ । ଯୁବ ବନ୍ଦୀମାନଙ୍କ ମନର କଥାକୁ ଗୀତରେ ପ୍ରକାଶ କରି ସେ ଲେଖିଥିଲେ –

''ବନ୍ଧୁ କହନା କହନା ଆଉ ସେ କଥା ମତେ
ହେଉ ନ ଥିବ ସେ ବ୍ୟଥିତ କେତେ ।
ସକାଳୁ ସଞ୍ଜ, ସଞ୍ଜରୁ ସକାଳ
ପିଲାଙ୍କ କଟାଳ, ଘରର ଜଞ୍ଜାଳ
ଘାରୁ ଥିବ ତା'ର କୋମଳ ଚିତ୍ତେ ।

*    *    *    *

କାକ ଡାକ ଶୁଣି ଘର ଚାଳ କଣେ
କ ପାଳି ଦିନ ଚାତକ ପରାଣେ
ଚାହୁଁଥିବ ଆସି ଗବାକ୍ଷ ପଥେ
ବନ୍ଧୁ କହନା କହନା ଆଉ ସେ କଥା ମତେ ।

*    *    *    *

କେବେ ସ୍ୱାଧୀନତା ଦେବେ କଳ୍ପତରୁ
ରାକ୍ଷସ ମୁହଁରୁ ଏ ଯୁଦ୍ଧ ଭୂଇଁରୁ
ଫେରି ଯାଇ ତାଙ୍କୁ ଭେଟିବି ସତେ
ବନ୍ଧୁ କହନା କହନା ଆଉ ସେ କଥା ମତେ ।"

ଜେଲ୍ ଭିତରେ ବନ୍ଧୁ କୁଟୁମ୍ବ, ଆତ୍ମୀୟ ସ୍ୱଜନଙ୍କୁ ଛାଡ଼ି ଦୟନୀୟ ଅବସ୍ଥାରେ ରହୁଥିବା ବନ୍ଦୀମାନଙ୍କ ପାଇଁ ବୀରବାବୁଙ୍କ ଗୀତ ସବୁ ନୂତନ ସାହସ ଓ ନୂତନ ଆଶା ସୃଷ୍ଟି କରୁଥିଲା ।

ଜେଲ୍ ଚାରିପାଖେ ବଡ଼ ବଡ଼ ପାଚେରି । ରାତି ଦିନ ତାରି ଭିତରେ ରହିବାକୁ ପଡ଼େ । ବାହାର ଦୁନିଆରେ କ'ଣ ସବୁ ଘଟୁଛି ସେ କଥା ଜେଲ୍‌ରେ ଥିବା ବନ୍ଦୀମାନେ ସହଜେ ଜାଣି ପାରନ୍ତି ନାହିଁ । ଜେଲ୍ ପାଚେରିକୁ ଦେଖି ଦିନେ ବୀରବାବୁଙ୍କ ମନରେ ନୂଆ ଭାବନା ସୃଷ୍ଟି ହେଲା ସେ ଲେଖିଲେ –

"କାରା ପାଚେରି !
କହ କେତେ ଦିନ ଲଗାଇ ବନ୍ଧନ

ରହିବୁ ତୁ ମୋତେ ଗରବେ ଘେରି ?
ଚାହିଁଲେ ତୋ ଆଡ଼େ ମନ ଭାଙ୍ଗିପଡ଼େ
ହୃଦୟ ଭିତରେ ହୁଏ ବିଦାରି
କାରା ପାଚେରି !
ମୋ ଭାଇ ଭଉଣୀ ଡାକୁଛନ୍ତି ମୋତେ
ଶୁଭୁ ନାହିଁ କିରେ ସେ ଶବଦ ତୋତେ
ପାଷାଣରୁ ବଳି ହେଲୁ ତୁ ପାଷାଣ
ବଇରୀ କଥାରେ ବଇରୀ
କାରା ପାଚେରି !
କେତେ ଓଷା ବ୍ରତ ପୁନେଇ ପରବ
ସ୍ମୃତି ପଟେ କରେ ଅନୁଭବ
କେତେ ଜହ୍ନରାତି କେତେ ମନ ସାଥୀ
ମନ ବିରସରେ ଯାଆନ୍ତି ଫେରି
କାରା ପାଚେରି !
କେଉଁ ଦୋଷ ଆମେ କରିଥିଲୁ କା'ର
ମାଗିଥିଲୁ ଆମେ ଆମ ହୃଦ ହାର
ଆମ ଘର ଚାବି ଆମେ କଲୁ ଦାବି
ବିନା ବିଚାରେ ତ ଆଣିଲା ଧରି
କାରା ପାଚେରି !

ସତ କଥା କହି ସେନାପତି ମୋର
ପୃଥିବୀର ସାଧୁ ଆଦି ବଡ଼ ଚୋର
ଏ ବୃଦ୍ଧ ବୟସେ ଭୀଷ୍ମଙ୍କ ପରାୟେ
ଶରଶେଯେ ରହି ପଡ଼ଇ ଝରି
କାରା ପାଚେରି !

* * * *

ପ୍ରଳୟ ଅନଳେ ଆସିଲାଣି ଜଳି
ତୋ ଶିଳା ହୃଦୟ ପଡ଼ଇ ତରଳି
ସ୍ୱାଧୀନତା ପଥେ ଚାଲିବୁ ସମସ୍ତେ
ମୁକତି ପତାକା ଗଗନେ ଧରି
କାରା ପାଚେରି !''

ଜାତୀୟ କବି ବୀରକିଶୋର ମୁଖ୍ୟତଃ କବିତା ରଚନା କରୁଥିଲେ । ପ୍ରବନ୍ଧ ଓ ନାଟକ ମଧ ତାଙ୍କ କଲମ ମୁନରୁ ବାହାରି ଥିଲା । ସେ ଲେଖିଛନ୍ତି ''ମୁଁ କବିତାକୁ ଭଲ ପାଏ, କବିତା ମତେ ଭଲ ପାଏ । ଋଷ୍ୟଶୃଙ୍ଗ ମୁନିଙ୍କୁ ଜରତା ଛଡ଼ାଇ ଆଣିଲା ପରି ସ୍ୱାଧୀନତା ମୋତେ ଭୁଲାଇ ଆଣିଥିଲା । ମୁଁ ସ୍ୱାଧୀନତାକୁ ମର୍ମେ ମର୍ମେ ଅନୁଭବ କରିଥିଲି ଏବଂ ସ୍ୱାଧୀନତାର ପବିତ୍ର ବହ୍ନିରେ ଝାସ ଦେଇଥିଲି । ଏଇ କବିତା ଲାଗି ଥରକୁ ଥର ଜେଲ୍ ଗଲି, ତଥାପି କବିତା ଆଉ ମୋ ଭିତରେ ଯେଉଁ ନିବିଡ଼ ସମ୍ପର୍କ ସେ ତୁଟିଲା ନାହିଁ, ବରଂ ଅଧିକ ଶକ୍ତ ହୋଇଛି ।''

**ସମ୍ବାଦପତ୍ର ସହ ସମ୍ପର୍କ**

ବୀରବାବୁ କିଛି ଦିନ ପାଇଁ ସମ୍ବାଦପତ୍ର ସହିତ ମଧ୍ୟ ସଂପୃକ୍ତ ଥିଲେ । ବ୍ରହ୍ମପୁର ଜେଲ୍‌ରେ ବନ୍ଦୀଭାବେ ରହିଥିଲା ବେଳେ ହାତ ଲେଖା ପତ୍ରିକା ସଂପାଦନା କରି ସ୍ୱାଧୀନତା ସଂଗ୍ରାମୀ ମାନଙ୍କୁ ଉତ୍ସାହିତ କରୁଥିଲେ । ଜେଲ୍ ଭିତରେ ସେ 'ବୈଜୟନ୍ତୀ' ନାଁରେ ଗୋଟିଏ ହାତଲେଖା ପତ୍ରିକା ସଂପାଦନା କରୁଥିଲେ । ଏହି କାର୍ଯ୍ୟରେ ତାଙ୍କୁ ସହାୟତା କରୁଥିଲେ ବୈକୁଣ୍ଠ ନାଥ ମହାନ୍ତି, ବିଶ୍ୱମ୍ଭର ପରିଡ଼ା ଓ ରାମପ୍ରସାଦ ମହାନ୍ତି ପ୍ରମୁଖ ଅନେକ ଯୁବ ବନ୍ଦୀ ।

ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କରିବା ଉଦ୍ଦେଶ୍ୟରେ ଆଧୁନିକ ଓଡ଼ିଶାର ଅନ୍ୟତମ ନିର୍ମାତା ଡକ୍ଟର ହରେକୃଷ୍ଣ ମହତାବ ଯେଉଁ 'ପ୍ରଜାତନ୍ତ୍ର' ପତ୍ରିକା ଆରମ୍ଭ କରିଥିଲେ, ତା ସହିତ ବୀରବାବୁଙ୍କର ଘନିଷ୍ଠ ସମ୍ପର୍କ ଥିଲା । କିଛିଦିନ ପାଇଁ ବୀରବାବୁ 'ପ୍ରଜାତନ୍ତ୍ର'ର ପ୍ରକାଶକ ଥିଲେ । ଏ ସମ୍ପର୍କରେ ଡକ୍ଟର ମହତାବ ଲେଖିଛନ୍ତି –

"ବୀରକିଶୋରଙ୍କ ସହ ମୋର ପରିଚୟ ୧୯୨୩ ଖ୍ରୀଷ୍ଟାବ୍ଦରେ । ମୁଁ ଜେଲ୍‌ରୁ ଫେରି ଏକ ସାପ୍ତାହିକୀ ପତ୍ରିକା ପ୍ରକାଶନ ପାଇଁ ଉଦ୍ୟମ କଲି । ପତ୍ରିକାର ନାମ ଦିଆଯାଇଥିଲା 'ପ୍ରଜାତନ୍ତ୍ର' । ଆଜି ଯେଉଁ ଦୈନିକ ପ୍ରଜାତନ୍ତ୍ର ପ୍ରକାଶିତ ହେଉଛି, ତାହାର ଆରମ୍ଭ ସେହି ସମୟରେ । ମୁଁ ଥିଲି ଏହାର ସଂପାଦକ ଓ ବୀରକିଶୋର ଥିଲେ ପ୍ରକାଶକ । ପତ୍ରିକାଟି ଫୁଲସ୍କେପ ସାଇଜର ଚାରିପୃଷ୍ଠା ମାତ୍ର । ତତ୍କାଳୀନ ମୁକୁର ପ୍ରେସରେ ଏହା ମୁଦ୍ରିତ ହେଉଥିଲା ।... ଏ ଇତିହାସ

ସହିତ ମୁଁ ଓ ବୀରବାବୁ ଏପରି ଜଡ଼ିତ ଥିଲୁ ଯେ, ପ୍ରଜାତନ୍ତ୍ର କହିଲେ ବୀରବାବୁ ମୋର ମନେ ପଡ଼ି ଯାଆନ୍ତି । ସେ ସମୟରେ ଯୁବା ଅବସ୍ଥାରେ କାରାବରଣ କି କଷ୍ଟଦାୟକ ଆମ୍ଭେ ଦୁହେଁ ଉପଲବ୍ଧି କରିଥିଲୁ । ପରବର୍ତ୍ତୀ ଜୀବନରେ ସେ ସମୟର କଥା ମନେ ପକାଇଲେ ଆଖିରୁ ଲୁହ ଆସିଯାଏ ।''

ବୀରବାବୁଙ୍କର ବହୁ ଲେଖା ଛପା ଯାଇ ନ ଥିବାରୁ ଲୋକେ ତାଙ୍କ ପ୍ରତିଭାର ସମ୍ପୂର୍ଣ୍ଣ ପରିଚୟ ପାଇ ପାରିନାହାନ୍ତି । ତଥାପି ସ୍ୱାଧୀନତା ଆନ୍ଦୋଳନ ବେଳେ ସେ ଯେତିକି ଗୀତ ଲେଖିଥିଲେ ସେଥିପାଇଁ ସେ ସବୁଦିନେ ଅମର ରହିଥିବେ ।

## ରାଜନୈତିକ ଜୀବନ

୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ ଦେଶ ସ୍ୱାଧୀନ ହେଲା । ଆମ ଦେଶରୁ ଗୋରାମାନେ ଯାଇ ଆମଦେଶର ଲୋକେ ଦେଶର ଶାସନଭାର ହାତକୁ ନେଲେ । ଯେଉଁମାନେ ବ୍ରିଟିଶ ସରକାରର ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ଲଢୁଥିଲେ ଘଟଣାକ୍ରମେ ସେମାନଙ୍କ ଭିତରୁ କିଛି ଲୋକଙ୍କ ହାତରେ ଦେଶର ଶାସନଭାର ରହିଲା । ଦେଶରେ ଗଣତନ୍ତ୍ର ଶାସନ ବ୍ୟବସ୍ଥା ଚାଲୁ ହେଲା । ନିର୍ବାଚନ ମାଧ୍ୟମରେ ଲୋକପ୍ରତିନିଧିମାନେ ବିଭିନ୍ନ ପଦ-ପଦବୀକୁ ନିର୍ବାଚିତ ହେଲେ ।

ସ୍ୱାଧୀନତା ହାସଲ ପୂର୍ବରୁ ବିଭିନ୍ନ ସ୍ତରର ସଂସ୍ଥାକୁ ଯେଉଁସବୁ ନିର୍ବାଚନ ଅନୁଷ୍ଠିତ ହୋଇଥିଲା, ବୀରବାବୁ ସେଥିରେ ସକ୍ରିୟ ଅଂଶ

ଗ୍ରହଣ କରିଥିଲେ । ୧୯୪୬ ମସିହାରେ କଟକ ଜିଲ୍ଲାବୋର୍ଡ଼କୁ ସଭ୍ୟ ଭାବରେ ସେ ଜଗତସିଂହପୁରରୁ ନିର୍ଦ୍ୱନ୍ଦରେ ନିର୍ବାଚିତ ହୋଇଥିଲେ । ପରବର୍ତ୍ତୀକାଳରେ ସେ କଟକ ଜିଲ୍ଲା ଲୋକାଲବୋର୍ଡ଼ର ଭାଇସ୍-ଚେୟାରମ୍ୟାନ ଓ ଚେୟାରମ୍ୟାନ ମଧ ନିର୍ବାଚିତ ହୋଇଥିଲେ ।

ବୀରବାବୁ ଲୋକାଲ୍‌ବୋର୍ଡ଼ର ଚେୟାରମ୍ୟାନ ଥିଲା ବେଳେ ଅନେକ ଜନହିତକର କାର୍ଯ୍ୟ କରିଥିଲେ । ସେ ନିଜେ ସାଧାରଣ ଲୋକଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ରଖୁଥିଲେ ଓ ସେମାନଙ୍କ ଅଭାବ-ଅସୁବିଧା ଦୂର କରିବା ପାଇଁ ସବୁବେଳେ ଚେଷ୍ଟା କରୁଥିଲେ ।

ପରାଧୀନ ଭାରତବର୍ଷରେ ଜେଲ୍‌ଭିତରେ ଥିଲା ବେଳେ ବୀରବାବୁଙ୍କର ସ୍ୱଦେଶ ପ୍ରୀତି ପ୍ରକାଶ ପାଇଥିଲା । ଜେଲ୍‌ରୁ ଫେରି ସାହିତ୍ୟକ୍ଷେତ୍ରରେ ନିଜକୁ ଲଗାଇବା ଉଦ୍ଦେଶ୍ୟରେ ସେ ଆରମ୍ଭ କରିଥିଲେ 'ମୋ'ଦେଶ' ପତ୍ରିକା । ସେତେବେଳେ ଯେତେଗୁଡ଼ିଏ ପତ୍ରପତ୍ରିକା ପିଲାମାନଙ୍କ ପାଇଁ ପ୍ରକାଶ ପାଉଥିଲା, ସେଥିମଧ୍ୟରୁ 'ମୋ'ଦେଶ' ପତ୍ରିକାର ଖୁବ୍ ନାଁ ଥିଲା ।

## ସାହିତ୍ୟ ସାଧନା

'ମୋ'ଦେଶ' ପ୍ରକାଶ ପାଇଁ ଓଡ଼ିଶାର ଅନ୍ୟତମ ଜନନାୟକ ବିଜୁପଟ୍ଟନାୟକ ବୀରବାବୁଙ୍କୁ ବିଶେଷ ଭାବରେ ସାହାଯ୍ୟ କରିଥିଲେ । ଏହି ସାହାଯ୍ୟରେ କଟକର କାଜୀଗଳିରେ 'ମୋ'ଦେଶ' ପ୍ରେସ୍

ବସିଥିଲା । କିଛି ଦିନ ପ୍ରେସ୍‌ଟି ଭଲ ଚାଲିଥିଲା । ହେଲେ ବୀରବାବୁ ପ୍ରେସ ଚଳାଇବା ପାଇଁ ଯେଉଁମାନଙ୍କ ଉପରେ ନିର୍ଭର କରୁଥିଲେ, ଶେଷରେ ସେମାନେ ତାଙ୍କୁ ଚିଟା କାଟିଲେ । ସ୍ୱାଧୀନତା ହାସଲ ପରେ ଯେଉଁ ନିର୍ବାଚନ ହେଲା ସେଥିରେ ବହୁ କଂଗ୍ରେସ ଲୋକ ଭାଗ ନେଲେ । ସେମାନଙ୍କର ସବୁ କାଗଜ ପତ୍ର ମୋଦେଶ ପ୍ରେସରେ ଛପା ହେଲା । କିନ୍ତୁ ଠିକ୍ ସମୟରେ ପଇସା ପଇଠ ହେଲା ନାହିଁ । ଏପରିକି ବୀରବାବୁ କାଗଜ ଦୋକାନରୁ ବାକିରେ ଯେଉଁ କାଗଜ ଆଣିଥିଲେ ସେ ପଇସା ମଧ ଠିକ୍ ସମୟରେ ଶୁଝାଗଲା ନାହିଁ । ବୀରବାବୁଙ୍କ ସରଳତାର ସୁଯୋଗ ନେଇ ଯିଏ ଯାହା ପାରିଲା ଖାଇଗଲା । ବୀରବାବୁ ଏକ ପ୍ରକାର ଦେବାଳିଆ ହୋଇଗଲେ । ଶେଷରେ 'ମୋ'ଦେଶ ପ୍ରେସ୍‌ଟି ନିଲାମ ହୋଇଗଲା । ତଥାପି ବୀରବାବୁ ଶେଷ ଜୀବନ ପର୍ଯ୍ୟନ୍ତ ଋଣ ମୁକ୍ତ ହୋଇ ପାରି ନଥିଲେ ।

ପରବର୍ତ୍ତୀ ଅବସ୍ଥାରେ ପାଠ୍ୟ ପୁସ୍ତକର ଯେତେବେଳେ ଜାତୀୟ କରଣ କରାଗଲା, ବୀରବାବୁ ସେ କମିଟିର ସଂପାଦକ ହୋଇଥିଲେ । ତାଙ୍କରି ଉଦ୍ୟମରେ ପ୍ରଥମଥର ପାଇଁ ପ୍ରକାଶ ପାଇଥିଲା ''ମୋ ଛବି ବହି'' ଏବଂ ପରେ ପରେ ''ନୂଆ ଛବି ବହି'' । ଏ ବହି ଦୁଇଟି ସେତେବେଳେ ପିଲାଙ୍କ ଭିତରେ ଖୁବ୍ ଆଦର ଲାଭ କରିଥିଲା । ସାନ ସାନ ପିଲାଙ୍କ ପଢ଼ିବା ପାଇଁ ବୀରବାବୁ ଯାହାସବୁ କରିଥିଲେ, ଏବେବି ଲୋକେ ସେସବୁ ଭୁଲି ନାହାନ୍ତି ।

## ବିଧାୟକ ବୀରକିଶୋର

୧୯୫୯ ମସିହାର ଘଟଣା । ଜଗତସିଂହପୁର ବିଧାନସଭା ଆସନରୁ ସେତେବେଳେ ଜଣେ ସାଧାରଣ ନାଗରିକ ଲଢ଼ିବା ପାଇଁ ବ୍ୟବସ୍ଥା ଥିଲା । ଅନ୍ୟତମ ସ୍ୱାଧୀନତା ସଂଗ୍ରାମୀ ନୀଳମଣି ପ୍ରଧାନ ସେ ନିର୍ବାଚନ ମଣ୍ଡଳୀରୁ ଜିଣି ଏମ.ଏଲ.ଏ ଥାଆନ୍ତି । ହଠାତ୍ ତାଙ୍କର ଦେହାନ୍ତ ହୋଇଯିବାରୁ ସେଠାରେ ଆଉଥରେ ନିର୍ବାଚନର ଦରକାର ପଡ଼ିଲା । ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ସେତେବେଳେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଚାଲୁଥାଏ । ରାଜ୍ୟରେ ଗଣତନ୍ତ୍ର ପରିଷଦ, ସୋସିଆଲିଷ୍ଟଦଳ ଓ କମ୍ୟୁନିଷ୍ଟମାନେ ଖୁବ୍ ସକ୍ରିୟ ଥାଆନ୍ତି । ସରକାରୀ ଦଳ ଓ ବିରୋଧୀଦଳ ସଂଖ୍ୟା ମଧ୍ୟରେ ବିଧାନସଭାରେ ବ୍ୟବଧାନ ଖୁବ୍ କମ୍ ଥାଏ । ସେଥିପାଇଁ ଜଗତସିଂହପୁର ଆସନ ଦଖଲ ପାଇଁ ଉଭୟ ପକ୍ଷ ଜୋରସୋରରେ ଲାଗିଥାଆନ୍ତି ।

ଡକ୍ଟର ମହତାବଙ୍କ ଉଦ୍ୟମରେ ବୀରବାବୁ ଜଗତସିଂହପୁର ଆସନରୁ କଂଗ୍ରେସ ପ୍ରାର୍ଥୀ ହେବେ ବୋଲି ସ୍ଥିର ହୋଇଥାଏ । କିନ୍ତୁ ନିର୍ବାଚନରେ ଖର୍ଚ୍ଚ କରିବାକୁ ତାଙ୍କ ପାଖରେ କିଛି ପଇସା ପତ୍ର ନଥାଏ । ପରିସ୍ଥିତି ସମ୍ପର୍କରେ ସେ ନିଜେ ଲେଖିଛନ୍ତି ''୫୯ ମସିହା କଥା । ୫୪ରୁ ସରକାର ଲୋକାଲ୍‌ବୋର୍ଡ଼କୁ ନେଇ ଯାଇଥାନ୍ତି । ଖଣ୍ଡିଏ ସାନ ଜମିଦାରୀ ଥିଲା, ତାହା ମଧ୍ୟ ସରକାର ନେଇ ଯାଇଥାନ୍ତି । ପ୍ରେସ୍ ବିକ୍ରି ହୋଇ-ଯାଇଥାଏ । ମୋତେ ଯଦି ଛିଡ଼ା ହେବାକୁ ପଡ଼େ, ହାତରୁ କିଛି ଦେବାକୁ

ପଡ଼ିବ । ଅନ୍ତତଃ ଯେଉଁ ଟଙ୍କା ପ୍ରାର୍ଥୀ ପତ୍ର ସାଥିରେ ଦେବାକୁ ହେବ, ତାହା ମୋ ପାଖରେ ନାହିଁ ।''

ଟଙ୍କା ପାଇଁ କାମ ଅଟକିଲା ନାହିଁ । ବୀରବାବୁ କଂଗ୍ରେସ ଦଳର ପ୍ରାର୍ଥୀ ଭାବେ ଜଗତସିଂହପୁର ଆସନରୁ ନିର୍ବାଚନ ଲଢ଼ିଲେ । ନିର୍ବାଚନ ଲଢ଼ିଲା ବେଳେ ସେ ଅନ୍ୟମାନଙ୍କ ପ୍ରତି କେବେହେଲେ ଅସୂୟାଭାବ ପ୍ରକାଶ କରୁ ନ ଥିଲେ । ଅନ୍ୟମାନଙ୍କ ପ୍ରତି କୋହଳ ମନୋବୃତ୍ତି ଯୋଗୁଁ ସେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ ।

ତାଙ୍କ ନିଜଭାଷାରେ, ''ଗ୍ରାମ ମାନଙ୍କରେ ବୁଲିଲା ବେଳେ ଅପରପକ୍ଷ ବନ୍ଧୁମାନଙ୍କୁ ଭେଟିଲେ ମୁଁ ଯେଉଁ ଆସ୍ୱସ୍ତି ବୋଧ କରେ, ତାହା ପ୍ରକାଶ କରି ପାରିବି ନାହିଁ । ପ୍ରତ୍ୟେକ ଦଳରେ ମୋର ବ୍ୟକ୍ତିଗତ ବନ୍ଧୁ ଅଛନ୍ତି ଯେଉଁମାନଙ୍କ ସାଥିରେ କାନ୍ଧ ମିଳାଇ ମୁଁ ୩୮ ବର୍ଷ କାମ କରି ଆସିଥିଲି ।'' ଏ ଉପ-ନିର୍ବାଚନରେ ବିରୋଧୀଦଳର ସମସ୍ତ ଚେଷ୍ଟା ସତ୍ତ୍ୱେ ବୀରବାବୁ ଜିତିଥିଲେ ଓ ୧୯୫୯ ମସିହା ଫେବୃଆରୀ ମାସ ୨୫ ତାରିଖରେ ବିଧାନସଭାର ସଭ୍ୟ ଭାବରେ ଶପଥ ଗ୍ରହଣ କରିଥିଲେ ।

## ବୀରକିଶୋରଙ୍କ ଜୀବନ ଦର୍ଶନ

ଜାତୀୟ କବି ବୀରକିଶୋର ଥିଲେ ଆଶାବାଦୀ । ସ୍ୱାଧୀନତା ଆନ୍ଦୋଳନ ସମୟରେ ନିଜ ଗୀତରେ ସ୍ୱାଧୀନ ଭାରତ ବିଷୟରେ ସେ ଅନେକ ସ୍ୱପ୍ନ ଦେଖିଥିଲେ । ହେଲେ ତାଙ୍କର ସେ ସ୍ୱପ୍ନ ସବୁ ସ୍ୱପ୍ନରେ ହିଁ

ରହିଗଲା । ଦେଶର ପରିସ୍ଥିତି ଖରାପ ହେବାର ଦେଖି ସେ ଲେଖିଥିଲେ,

" ଭୋଟ ବାକ୍ସ ନୁହେଁ ସେବା ମାପକାଠି
ସେବକ ନ ଖୋଜେ କିଏ କେଉଁ ପାର୍ଟି
ଗଣତନ୍ତ୍ର ଅର୍ଥ ନୁହେଁ ଗଣାଗଣି
ସାମ୍ୟବାଦ ଅର୍ଥ ନୁହେଁ ହଣାହଣି"

ଆଧୁନିକ ସଭ୍ୟତାର ତଥାକଥିତ ବାବୁମାନଙ୍କୁ ଦେଖି ସେ ପରିହାସ ଛଳରେ ଲେଖିଥିଲେ,

"ବାବୁ ନ ଚିହ୍ନିବ ଛତା ଯୋତାରୁ
ସାଧୁ ନ ଚିହ୍ନିବ ଗୋଲି ଚିତାରୁ
ନେତା ନ ଚିହ୍ନିବ ଖାଲି କଥାରୁ
ଥରେ ବୁଲି ଆସ କଲିକତାରୁ ।"

ବୀରବାବୁ ଲେଖିଛନ୍ତି, "ପାରାବାରଠାରୁ କାରାଗାର ତଥା [illegible]ାର ପର୍ଯ୍ୟନ୍ତ ଗୀତ ଲେଖିବା ଥିଲା ମୋର କାର୍ଯ୍ୟ । ଦୀର୍ଘ ୫୦ ବର୍ଷ ସୈନିକ ହୋଇ ମୋର ମନୋଭାବ ସଙ୍ଗୀତରେ ଫୁଟାଇ ଆସୁଛି । ଏହି ଲେଖା ଲାଗି ରାଜଦ୍ରୋହୀ କବି ଭାବରେ ବିଭିନ୍ନ ସମୟରେ ସାତବର୍ଷ ପଥର ପାଚେରି ଆଢୁଆଳରେ ଜୀବନ କଟାଇଛି ।"

ବୀରବାବୁ ଜୀବନରେ ଯାହା ପାଇଛନ୍ତି, ସେସବୁ ଅନ୍ୟକୁ ଦାନ କରି ଯାଇଛନ୍ତି । ଜୀବନରେ ଆର୍ଥିକ ଦୁଃସ୍ଥିତି ଘଟିଛି । ଅଭାବରେ

ପଡ଼ିଛନ୍ତି । କିନ୍ତୁ କାହା ପାଖରେ ହାତ ପତେଇ ନାହାନ୍ତି କିମ୍ୱା ଜୀବନରେ କେବେ ଭାଙ୍ଗି ପଡ଼ି ନାହାନ୍ତି ।

ଦେଶ ସେବା ବଦଳରେ ସେ କିଛି ଆଶା କରି ନାହାନ୍ତି । ମାନବ ସେବାରେ ମାଧବ ସେବାର ଫଳ ମିଳିବ ବୋଲି ବିଶ୍ୱାସ ରଖି ସେ ଦେଶ ପାଇଁ କାମ କରି ଯାଇଛନ୍ତି । ତାଙ୍କ ଭାଷାରେ —

''କୋଇଲା ଖଣିରୁ ତ ହୀରା ବାହାରେ

ମତ୍ତ କରୀବର ତ ମୁକ୍ତା ଦାନ କରେ

ବିଷଧର ଫଣିତ ମଣିଦ୍ୱାରା ପୃଥିବୀ ଉଜ୍ୱଳ କରେ ।''

**ଶେଷ ଜୀବନ**

ଜାତୀୟକବି ବୀରକିଶୋର ଦାସ ୧୯୭୩ ମସିହା ଅପ୍ରେଲ ମାସ ୨୯ ତାରିଖରୁ ଏ ଧରାଧାମରୁ ବିଦାୟ ନେଲେଣି । ଏ ସଂସାରରେ ଜନ୍ମ ହେଲେ ମୃତ୍ୟୁ ସୁନିଶ୍ଚିତ । ସେଥିପାଇଁ କୁହାଯାଏ –

''ମର୍ତ୍ତ୍ୟ ମଣ୍ଡଳେ ଦେହ ବହି

ଦେବତା ହୋଇଥିଲେ ମରଇ'' ।

କିନ୍ତୁ ଏପରି କେତେକ ଲୋକ ଏ ସଂସାରରେ ଜନ୍ମ ଲାଭ କରିଥାନ୍ତି, ଯେଉଁମାନେ କି ମରିଗଲେ ମଧ ତାଙ୍କ କର୍ମ ପାଇଁ ଅମର ହୋଇଥାନ୍ତି । ଏଇ ମଣିଷ ମାନଙ୍କ ମଧରେ ଥିଲେ ଜାତୀୟକବି ବୀରକିଶୋର ଦାସ ଅନ୍ୟତମ । ଗୋଲଟେବୁଲ୍ ବୈଠକରେ ମହାତ୍ମାଗାନ୍ଧି ଯୋଗ ଦେଇ ଲଣ୍ଡନରୁ ଫେରିଲା ପରେ ଜାତୀୟକବିଙ୍କ ଗୀତ –

"ଅରି ଫେରି ନାହିଁ, ଯୁଦ୍ଧ ସରି ନାହିଁ,

ଆସ ମୋ' ଶିବିରେ ଆସ ଭାଇ

ହିମାଚଳ ଶିରୁ ଶବଦ ଶୁଭଇ

ଡେ଼ରି ନାହିଁ ଆଉ ଡର ନାହିଁ ।"

ଆଜି ବି ଲୋକଙ୍କ ମନରେ ପ୍ରତିଧ୍ୱନିତ ହେଉଛି । କବି ପରାଧୀନ ଭାରତରେ ଯେଉଁ କଥା ଲେଖିଥିଲେ, ଆଜି ବି ଲୋକେ ସେ କଥା ମନେ ପକାଉଛନ୍ତି ।

* * *

**ସହାୟକ ପୁସ୍ତକ**


୧. ଜାତୀୟକବି ବୀରକିଶୋର ଗ୍ରନ୍ଥାବଳୀ

୨. ଜାତୀୟକବି ବୀରକିଶୋର - ବିନୋଦ କାନୁନଗୋ

୩. କବି ବୀରକିଶୋର - ପଠାଣି ପଟ୍ଟନାୟକ

